# ବାନ୍ଧ ତୁମ୍ ପୁଡ଼ା ପୁଟୁଳା



## ବିନୋଦ କାନୁନ୍‌ଗୋ

Digitized by srujanika@gmail.com

© BINODE KANUNGO

*Specially prepared for the children of Orissa as a low priced edition. Approved by the Govt. of Orissa for distribution under the Operation Blackboard Scheme.*

ବାନ୍ଧ ତୁମ ପୁଡ଼ା ପୁତୁଳା

**BANDHA TUMA PUDA PUTULA**

ଜ୍ଞାନମଣ୍ଡଳ ଫାଉଣ୍ଡେସନ୍, ବାରବାଟୀ ଷ୍ଟାଡ଼ିୟମ୍,
କଟକ-୭୫୩୦୦୫ଙ୍କ ଦ୍ୱାରା ପ୍ରକାଶିତ ଓ ମୁଦ୍ରିତ ।

Published & Printed by Jnanmandal Foundation, Barabati Stadium, Cuttack-753005

ମୂଲ୍ୟ: 2.50 p

Digitized by srujanika@gmail.com

# ଏମିତିକା ଗୋଟାଏ ଭୁଲ ହୋଇଗଲା !!......

ଶ୍ରୀକୃଷ୍ଣଙ୍କ ଜନ୍ମଭୂମିରେ ମୋହନ ବୋଲି ଯେଉଁ ପିଲାଟି ଜନ୍ମ ହୋଇଥିଲା ଦିନେ ସେ ବିଲାତକୁ ଯାଇ ବାରିଷ୍ଟର ହେଲା । ବିଲାତରେ ଥିଲାବେଳେ ଇଂରେଜ ଜାତିର ଯେତେସବୁ ଭଲ ଗୁଣ ସେଗୁଡ଼ିକୁ ସେ ଆଦରିଗଲା । ଠିକ୍ ସମୟରେ କାମ କରିବା, ନିଜର ଘର ଗୃହ ପଟକୁ ସଫା ରଖିବା, ଯାହା କରିବ ବୋଲି ଜବାବ ଦେଇଥିବ ସେ କଥାକୁ ପାରୁପର୍ଯ୍ୟନ୍ତ ଚେଷ୍ଟାକରି ଶେଷ କରିବା ପ୍ରଭୃତି ହେଲା ଇଂରେଜ ଜାତିର ଭଲ ଗୁଣ । ଖରାପ ଗୁଣ ହେଲା ଚୁରିଆଡ଼୍ ଅନ୍ୟର ଧନ ସମ୍ପଦ ଆଣି ନିଜ ଦେଶରେ ଠୁଳ କରିବା । ସେଇଥିପାଇଁ ସେମାନଙ୍କୁ କୁହାଯାଏ ବେପାରୀ ଜାତି । ଗୋଟାଏ ସମୟରେ ସେମାନେ ବିଚାର କଲେ—ପୃଥିବୀର ବହୁ ଅଞ୍ଚଳରେ ଧନସମ୍ପଦ ଭରି ରହିଛି । ସେସବୁକୁ ପାଇବାକୁ ହେଲେ ସେହିସବୁ ଦେଶକୁ ନିଜ ଅଧୀନରେ ରଖିବାକୁ ହେବ । ସେଠାରେ ଇଂରେଜ ସୈନ୍ୟ ରହି ଲୋକଙ୍କୁ ଡରାଇ ହରାଇ ରଖିବେ । ଏଣେ ଇଂରେଜ ବେପାରୀମାନେ ମନ ଇଚ୍ଛା ବେପାର ଚଳାଇ ଧନ ସମ୍ପଦ ଆଣି ବିଲାତରେ ସାଇତିବେ । ସେହିଭଳି ବିଚାର ସେମାନେ ଭାରତ ଭଳି ଗୋଟାଏ ବଡ଼ ଦେଶକୁ ଦଖଲ କରିଗଲେ । ବିଲାତର ରାଣୀ ଆମ ଦେଶର ରାଜା ରାଣୀ ହେଲେ । ଭାରତର କେତେ ଲୋକଙ୍କୁ ହାତକରି ସେମାନଙ୍କ ଶାସନ ଚଳାଇଲେ । ଆମ ଦେଶର ବହୁ ଲୋକ ସେମାନଙ୍କ ସଇନ ବିଭାଗରେ ନାମ ଲେଖାଇଲେ । ଯାହାକୁ କହନ୍ତି ଆମରି ଠେଙ୍ଗାକୁ ଆମରି ପିଠିରେ ବସାଇ ବେଶ୍ ନିଶ୍ଚିନ୍ତ ମନରେ ଶାସନ ଚଳାଇଲେ, ବେପାର ଚଳାଇଲେ ମଧ୍ୟ । ଆମ ଦେଶରେ ହଜାର ହଜାର ବର୍ଷ ହେଲା ସଂସ୍କୃତ ଭାଷା, ଅନ୍ୟ କେତେକ ଭାଷା ଚଳୁଥିଲା । ସେହିସବୁ ଭାଷାରେ ବେଦ, ଉପନିଷଦ ରାମାୟଣ, ମହାଭାରତ, ଲେଖାଯାଇଥିଲା । ଭାରତର ଚରକ, ସୁଶ୍ରୁତ, ବାଗ

Digitized by srujanika@gmail.com

ଭିନ୍ନ ପ୍ରଭୃତିଙ୍କ ଭଳି ବୈଦ୍ୟ ପୃଥିବୀରେ ନ ଥିଲେ ବୋଲି କହିଲେ ଚଳେ । ସେମାନେ ବଡ଼ ଚମତ୍କାର ବହି ସବୁ ସଂସ୍କୃତ ଭାଷାରେ ଲେଖିଥିଲେ । କିନ୍ତୁ ଇଂରେଜମାନେ ଆମ ଦେଶକୁ ପୂରା ପରି ଅଧୀନରେ ରଖିସାରିଲା ପରେ କହିବାକୁ ଆରମ୍ଭକଲେ—ଏସବୁ ଭାଷା ସେମିତି କିଛି ଭଲ ନୁହେଁ । ଇଂରାଜୀ ହେଉଛି ସବୁଠାରୁ ଉନ୍ନତ ଭାଷା । ସେହି ଭାଷାରେ ଭଲ କରି କଥାବାର୍ତ୍ତା କରିହେବ, ସବୁ କଥା ବୁଝାଇ କହି ହେବ । ହିନ୍ଦୀ, ବଙ୍ଗଳା, ଓଡ଼ିଆରେ ସେଭଳି କରି ହେବ ନାହିଁ । ଆମ ସ୍କୁଲରେ କଲେଜରେ ଇଂରାଜୀ ଭାଷାରେ ପଢ଼ାହେଲା । କୁହାଗଲା "ବିଜ୍ଞାନର ଯେଉଁସବୁ ନୂଆ ନୂଆ କଥା ବାହାରୁଛି ସେଗୁଡ଼ିକୁ କେବଳ ଇଂରାଜୀ ଭାଷାରେ ହିଁ ବୁଝାଇହେବ ।"

ଆମେ ବି ସେଭଳି କଥା ସବୁକୁ ବିଶ୍ୱାସ କରିଗଲୁ । ଯେଉଁ ଅନ୍ୟ କେତେ ଜଣ ବୁଦ୍ଧିମାନ ଲୋକ ଏଭଳି କଥାରେ ପୂରା ବିଶ୍ୱାସ କଲେ ନାହିଁ, ସେମାନେ ପଚାରିଲେ—ଆଚ୍ଛା, ବିଜ୍ଞାନ ସିନା ଓଡ଼ିଆରେ ପଢ଼ାଇ ହେବ ନାହିଁ, ଇତିହାସ, ଭୁଗୋଳ, ଶାସ୍ତ୍ରପୁରାଣ କଥା କାହିଁକି ଇଂରାଜୀରେ ପଢ଼ାଉଛ ? ସେମାନଙ୍କ ଅସଲ ପ୍ରଶ୍ନର ଉତ୍ତର ନଦେଇ—'ତୁମେ ଗୁଡ଼ା ନବୁଝିଆ ମୂର୍ଖ' ବୋଲି କୁହାଗଲା । ଶେଷକୁ ଏମିତି ହେଲା ଯେ ଇଂରାଜୀ ପାଠୁଆ ଓଡ଼ିଆମାନେ, ଭାରତୀୟମାନେ ନିଜ ନିଜ ଭିତରେ ନିଜ ଭାଷାରେ କଥାବାର୍ତ୍ତା ନକରି ଇଂରାଜୀରେ କହିବାଟାକୁ ବାହାଦୁରୀ ବୋଲି ଭାବିଲେ । ପୁଅ ବାପାଙ୍କ ପାଖକୁ ଓ ବାପା ପୁଅ ପାଖକୁ ଇଂରାଜୀରେ ଚିଠି ଲେଖିଲେ । ପୁଅ କେମିତି ସାହେବଙ୍କ ଭାଷାରେ ଚିଠି ଲେଖିଛି ବୋଲି ବାପା ବହୁ ଲୋକଙ୍କୁ ନେଇ ଦେଖାଇଲେ । କେବଳ ସେତିକି ନୁହେଁ । ସାହେବଙ୍କ ଭଳି ଇଂରାଜୀ ଉଚ୍ଚାରଣ କରିବା ପାଇଁ ଆମ ଦେଶର ସ୍କୁଲ କଲେଜ ଛାତ୍ରଙ୍କ ଭିତରେ ପ୍ରତିଯୋଗିତା ଚାଲିଲା । ଶେଷରେ ଆମେ ବିଶ୍ୱାସ କରିଗଲୁ ଯେ ଇଂରେଜ ଜାତିର ସବୁକିଛି ଭଲ; ଆମେ ଅସଭ୍ୟ ହୋଇ ରହିଥିଲୁ, ସେମାନେ ଆସି ଆମକୁ ସଭ୍ୟ କରୁଛନ୍ତି । ଶ୍ରୀକୃଷ୍ଣ, ରାମ, ବୁଦ୍ଧ, ଚୈତନ୍ୟ, ବାଲ୍ମୀକୀ, କାଳିଦାସ, ଶାରଳାଦାସଙ୍କ ଦେଶର ଲୋକେ ହଜାର ହଜାର ବର୍ଷ ହେଲା ଅନ୍ଧାରରେ ଥିଲେ—ଅଳ୍ପ କେତେ ଶହ ବର୍ଷ ପୂର୍ବେ ସଭ୍ୟ ହୋଇଥିବା ଇଂରେଜମାନେ ଆସି ଆମକୁ ଅନ୍ଧାରରୁ କାଢ଼ି ଆଣି ଆଲୁଅରେ ଠିଆ କରିଦେଲେ । ଏହିଭଳି ଥରେ ଭାବିଗଲା ପରେ ଆମେ ସବୁ ନିଜ ମନକୁ ବୁଝାଇ ଦେଲୁ—ସବୁଦିନ ପାଇଁ ଇଂରେଜ ଜାତି ଏ

Digitized by srujanika@gmail.com

ଦେଶରେ ରାଜୁତି ଚଳାଇବ । ସେମାନଙ୍କୁ ତଡ଼ିବାପାଇଁ ଉଦ୍ୟମ ନକରି କିଛି କିଛି ଭଲ କାମ କରାଇ ନେବାକୁ ପଡ଼ିବ । ସେମାନେ ବି ସେମିତିକା କଲେ । ଶେଷକୁ ଏ ଦେଶରେ "ଶାନ୍ତି ବିରାଜିଛି" ବୋଲି ସେମାନେ ପୃଥିବୀର ଅନ୍ୟ ସବୁ ଦେଶରେ ପ୍ରଚାର କଲେ—ଆମେ ବି ସେମାନଙ୍କ କଥାରେ ହିଁ ଭୁଲିଲୁ ।

ମୋହନ ଦାସ କରମଚାନ୍ଦ ଗାନ୍ଧୀ ଯେତେବେଳେ ବିଲାତରେ ବାରିଷ୍ଟରୀ ପଢ଼ୁଥିଲେ ସେତେବେଳେ ଆମ ଦେଶର ଏହି ଦଶା । ସେଠାରୁ ଫେରି ସେ ଓକିଲାତି ଆରମ୍ଭ କଲେ । ବିଦେଶୀମାନଙ୍କୁ ଏ ଦେଶରୁ ତଡ଼ିବା ଭଳି ଚିନ୍ତା କରିବା ପାଇଁ ମଧ୍ୟ ତାଙ୍କର ହୁଏତ ସାହସ ହେଉ ନଥାଏ । ଏତିକିବେଳେ ତାଙ୍କୁ ଗୋଟାଏ ସୁଯୋଗ ମିଳିଗଲା । ଭାରତଠାରୁ ବହୁ ଦୂରରେ ଆଫ୍ରିକା ମହାଦେଶର ଦକ୍ଷିଣ ଅଂଶରେ ଗୋଟିଏ ଦେଶ । ତା ନାଁ ଦକ୍ଷିଣ ଆଫ୍ରିକା । ସେଇଟିକୁ ଇଂରେଜମାନେ ଦଖଲ କରି ନେଇଥିଲେ । ସେ ଦେଶରେ ମାଟିତଳେ ସୁନା ଥିଲା । ଇଂରେଜମାନେ ଭାବିଲେ ସେହି ଦେଶରେ ଯାଇ ବସବାସ କରି ରହିଯିବେ । ଦିନେ ଦେଖିଲା ବେଳକୁ ସେମାନେ କହିଲେଣି—"ଏଇଟା ଆମ ଇଂରେଜଙ୍କ ଦେଶ" । ଯେଉଁ କଳା ଲୋକେ ସେଠାରେ ରହୁଥିଲେ ସେମାନଙ୍କଠାରୁ ଭଲ ଉର୍ବର ଜମି ସବୁ ଛଡ଼ାଇ ନେଇ ସେମାନଙ୍କୁ ନିରସା ଜମିରେ ଚାଷ କରିବାକୁ, ଘର ଦ୍ୱାର କରିବାକୁ ବାଧ୍ୟ କଲେ । ଗୋରାଙ୍କ ହାତରେ ତୋପ ବନ୍ଧୁକ । ବିଚରା କଳା ଲୋକେ କରମ ଆଦରି ରହିଲେ ।

ଜମି ଛିନା ନେଲେ—ଚାଷ କରିବ କିଏ ? ବିଲାତର ଗୋରାମାନେ ସେତେବେଳକୁ ଭଲ ଚାଷ କରି ଜାଣି ନଥିଲେ । ବେଶୀ ଜମିକୁ କମ୍ ଲୋକ । ତେଣୁ ଭାରତରେ ଯେଉଁ ଗୋରା ବଡ଼ଲାଟ ଥିଲେ ତାଙ୍କୁ କହିଲେ କିଛି କିଛି ମୂଲିଆ ପଠାଇବା ପାଇଁ । ଆଫ୍ରିକାକୁ ଗଲେ ଭଲ ମଜୁରି ପାଇବ, ଭଲରେ ରହିବ, କେତେ ବର୍ଷ ପରେ ନିଜ ଦେଶକୁ ଫେରି ଆସିବ ବହୁତ ପଇସା ପତ୍ର ନେଇ—ଏମିତିକା ଲୋଭ ଦେଖାଇ ଭାରତରୁ କେତେ ହଜାର ଲୋକଙ୍କୁ ଏଠାରେଥିବା ଗୋରା ହାକିମମାନେ ସେ ଦେଶକୁ ପଠାଇ ଦେଲେ । ପ୍ରଥମେ ପ୍ରଥମେ ସେମାନଙ୍କ ପ୍ରତି ଭଲ ବ୍ୟବହାର କରାଗଲା । ସେମାନଙ୍କ ଭିତରୁ କେତେକ କଅଣ କଲେ ନା ନିଜ ପିଲା-

Digitized by srujanika@gmail.com

ହୃଆଙ୍କ ଉଠାଇ ମଠାଇଲେ । ଭାରତର ଲୋକେ ଝାଳର ଜମି କଣି ଚାଷ କଲେ—ଆଜ ମୂଳିଆ ହୋଇ ରହିଲେ ନାହିଁ । ଝାଳର ବଣିଜ ବେପାର ମଧ୍ୟ କଲେ । ଗୋରା ଲୋକଙ୍କର ଈର୍ଷା ହେଲା । ତେଣିକି ଚାଲିଲା ଭାରତୀୟଙ୍କ ପ୍ରତି ଖରାପ ବ୍ୟବହାର । ଅବସ୍ଥା ଏହିଭଳି ଥିଲାବେଳେ ସେ ଦେଶର ଜଣେ ଭାରତୀୟ ବ୍ୟବସାୟୀ ଗୋଟାଏ ମକଦ୍ଦମାରେ ଲଢ଼ିବା ପାଇଁ ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କୁ ଦକ୍ଷିଣ ଆଫ୍ରିକାକୁ ନେଲେ । ଅଳ୍ପ ଦିନ ପାଇଁ ଯାଇଥିଲେ ସିନା ବେଶୀ ଦିନ ରହିଗଲେ । ରହିଲାରୁ ଭାରତୀୟଙ୍କ ମକଦ୍ଦମା ସବୁ ଲଢ଼ିଲେ । ତାଙ୍କ ନାଁ ହୋଇଗଲା "କଳା ବାରିଷ୍ଟର" । ଭାରତୀୟଙ୍କ ପ୍ରତି ଖରାପ ବ୍ୟବହାର ହେଉଛି ବୋଲି ଦେଖି ସେ ପ୍ରତିବାଦ କଲେ । ଲୋକଙ୍କୁ ଏକାଠି କଲେ । ଚାଲିଲା ଗୋରା ସରକାର ବିରୁଦ୍ଧରେ ଆନ୍ଦୋଳନ । ସେମାନେ ଭାରତୀୟମାନଙ୍କୁ ନେଇ ଜେଲରେ ପୂରାଇଲେ—ମାଡ଼ ଦେଲେ । ଗାନ୍ଧୀଙ୍କୁ ମଧ୍ୟ ଥରେ ଦି'ଥର ଜୋର ମାଡ଼ ହୋଇଛି । ସେ କିନ୍ତୁ ଦବିଗଲେ ନାହିଁ । ସେଠାରେ ଯେଉଁ ଆନ୍ଦୋଳନ ହେଲା ତାକୁ କୁହାଗଲା "ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହ" । ସେତେବେଳେ କସ୍ତୁରବା ମଧ୍ୟ ଶହ ଶହ ଭଉଣୀଙ୍କୁ ସତ୍ୟାଗ୍ରହରେ ମିଶାଇଲେ, ନିଜେ ଜେଲ ଗଲେ ।

ଏହି କାମ ଚାଲିଥିବା ବେଳେ ଗାନ୍ଧିଜୀ "ଅହିଂସା ଲଢ଼େଇ" କଥା ଉଠାଇଲେ । ସରକାର ସହିତ ଲଢ଼ିବା—କିନ୍ତୁ ବନ୍ଧୁକ, ଠେଙ୍ଗା, ବାଡ଼ି ଧରିବା ନାହିଁ । ଏମିତିକା ଗୋଟାଏ କଥା ଆଗରୁ କେହି ଶୁଣି ନ ଥିଲେ । ସେ ଲଢ଼ାଇରେ ଗାନ୍ଧୀଙ୍କର ଜୟ ହେଲା । ଏତେ କଥା ଅଙ୍ଗେ ନିଭାଇଲା ପରେ ଯାଇ ସେ ଭାରତକୁ ଫେରିଲେ । ଏ ଦେଶରେ ସେ ଆସି ଦେଖିଲେ ଯେ ବିଲାତ ସରକାର ମନମୁଖୀ ଶାସନ ଚଳାଇଛି । ଅଳ୍ପ କେତେକ ଲୋକ ପାଟିତୁଣ୍ଡ କରୁଛନ୍ତି । ସରକାର ସେମାନଙ୍କ କଥା ସେମିତି କିଛି ଶୁଣୁ ନାହାନ୍ତି । ମଝିରେ ମଝିରେ କିଛି କିଛି ସୁବିଧା କରି ଦେଉଛନ୍ତି । ସେଥିରେ ପାଟିକଲା ଲୋକେ ସନ୍ତୁଷ୍ଟ ହୋଇ ଯାଉଛନ୍ତି । ଏମିତି ହୋଇଯାଉଛି ଯେ ସତେ ଯେପରି କି "କାନ୍ଦୁଥିବା କାନ୍ଦୁଥିବା – ଯା'ହା ଦେଉଥିବେ ବାନ୍ଧୁଥିବା"—ଏଇଠି ଆସି କଥା ପଡ଼ୁଅଛି । ବଙ୍ଗ ଦେଶ ଓ ମହାରାଷ୍ଟ୍ରର କେତେଜଣ ଦେଶପ୍ରେମୀ ଯୁବକ ବନ୍ଧୁକ ଗୁଳି ସଂଗ୍ରହ କରି ଠାଁ ଠାଁ ଗୋରା ଅଫିସରମାନଙ୍କୁ ମାରୁଛନ୍ତି ।

Digitized by srujanika@gmail.com

କରୁ କୋଟି ଜନତା ସେମାନଙ୍କ ସହିତ ଯୋଗ ଦେଉନାହାନ୍ତି । ଗାନ୍ଧୀ ପ୍ରଥମ ଥର ପାଇଁ କହିଲେ—ଯେଉଁ ସରକାର ଏ ଦେଶ ଲୋକଙ୍କ ମତକୁ ଖାତିର ନ କରି ମନଇଚ୍ଛା ଶାସନ ଚଳାଉଛି, ଯେତେବେଳେ ମନ ହେଉଛି ଲୋକଙ୍କ ଉପରେ ଅତ୍ୟାଚାର କରୁଛି, ଏ ଦେଶର ଧନ ସମ୍ପତ୍ତିକୁ ନାନା ଭାବରେ କଳକୌଶଳ କରି ଲୁଟି ନେଉଛି, ସେ ସରକାର ସହିତ ଆମେ ଆଉ କୌଣସି ସମ୍ପର୍କ ରଖିବା ନାହିଁ । ସହ-ଯୋଗ କରି ନାହିଁ ବୋଲି କୁହାଯିବାରୁ ତାକୁ ଅସହଯୋଗ ଆନ୍ଦୋଳନ ବୋଲି କୁହାଗଲା । ଏଭଳି କାହିଁକି କହୁଛ—ଏପରି ଅପରାଧରେ ଗାନ୍ଧୀଙ୍କୁ ଗିରଫ କରି ଜେଲରେ ନେଇ ରଖିଲେ । ସେତେବେଳକୁ ଭାରତର ଲୋକେ ତାଙ୍କୁ ମହାତ୍ମା ବୋଲି କହିଲେଣି । ଦେଶର ଚାରିଆଡ଼େ "ମହାତ୍ମା ଗାନ୍ଧୀ କି ଜୟ" ଧ୍ୱନି କୋଟି ମୁଖରେ ଶୁଣାଗଲାଣି ।

କିଛି ଦିନ ପରେ ତାଙ୍କୁ ଖଲାସ କରି ଦିଆଗଲା । ଭାରତ ଭଳି ଏତେ ବଡ଼ ଦେଶର ଏ ମୁଣ୍ଡରୁ ସେ ମୁଣ୍ଡକୁ ଯାଇ ସେ ଲୋକଙ୍କୁ କହିଲେ—ଏ ଦେଶରୁ ବିଦେଶୀ ଶାସନ ଦୂର କରି ଆମେ ସ୍ୱାଧୀନ ହେବା ଯେତେବେଳେ ଲୋକେ ସବୁକଥା ବୁଝିଗଲେ ମହାତ୍ମା ଗାନ୍ଧୀ ଡାକରା ଦେଲେ—"ଚାଲ ଆମେ ଦାଣ୍ଡିଆ ଦଖଲ କରିବା" । ସରକାରକୁ ଏ ଦେଶରୁ ବେଦଖଲ କରିବାକୁ ହେଲେ ଆମେ ତାହାର ଖରାପ ଆଇନକୁ ମାନିବା ନାହିଁ । ଲୁଣ ଆଇନ ନିଶ୍ଚୟ ଖରାପ । ସେ ଆଇନକୁ ଭାଙ୍ଗି ଆମେ ଜେଲରେ ପଶିବା । ଲାଠି ଗୁଳି ଚାଲିଲେ ମଧ୍ୟ ଡରିବା ନାହିଁ । "ତାଙ୍କ ଡାକ ଆମ ଦେଶର ଲୋକେ ଶୁଣିଲେ । ସେ ନିଜେ ଆଗେ ଆଇନ୍ ଭାଙ୍ଗିଲେ । ତାହାପରେ ଚାଲିଲା ଗିରଫ, ଲାଠି, ଗୁଳି । ହଜାର ହଜାର ଲୋକଙ୍କୁ ନେଇ ଜେଲ ଭିତରେ ବନ୍ଦୀକରି ରଖାଗଲା ।

## ଲୋକ ଦେଖାଣିଆ ବୈଠକ :

ଭାରତର ଲୋକେ ଆଉ ଇଂରେଜ ଶାସନକୁ ବରଦାସ୍ତ କରୁ ନାହାନ୍ତି, ସେମାନଙ୍କୁ ତଡ଼ିବା ପାଇଁ ଦୁଃଖ କଷ୍ଟ ବରଣ କରିବାକୁ ପଛାଉ ନାହାନ୍ତି । ଦେଶର ଲୋକଙ୍କୁ କୌଣସି ଆଣ୍ଟି ଦୁଣିଆ ଶାସନ କ୍ଷମତା ଦେବା ପାଇଁ ବ୍ରିଟିଶ ସରକାର ପ୍ରସ୍ତୁତ ନୁହନ୍ତି । ସବୁଦିନ ପାଇଁ ଭାରତକୁ ପରାଧୀନ ରଖି ମନଇଚ୍ଛା ଶାସନ ଚଳାଇବାକୁ ଚାହାନ୍ତି ।

Digitized by srujanika@gmail.com

ଏଣେ କିନ୍ତୁ କହୁଛନ୍ତି ସେ ଲୋକ ମତରେ ଶାସନ ଚଳାଇବାଟା ହେଉଛି ସଭ୍ୟ ଲୋକଙ୍କର କାମ —ଏହିଭଳି ଧବୁ କଥା ବିଦେଶରେ କୁହାଯିବାରୁ ବିଲାତ ସରକାର ଆଡ଼ୁଆଳରେ ପଡ଼ିଲେ । ଆମ ଦେଶରେ ମଧ୍ୟ ଏମିତିକା କେତେ ଲୋକେ ଥିଲେ— ଯେଉଁମାନେ କି ଗାନ୍ଧୀଙ୍କ କଥାରେ ଜେଲ ଯାଉ ନ ଥିଲେ ସତ, ଦେଶବାସୀଙ୍କୁ ଅଧିକରୁ ଅଧିକ ଶାସନ କ୍ଷମତା ଦିଅ ବୋଲି ଦାବୀ କରୁଥିଲେ । ଏହିମାନଙ୍କୁ ଟିକିଏ ସନ୍ତୁଷ୍ଟ କରିବା ପାଇଁ ବିଲାତ ସରକାର ଲଣ୍ଡନଠାରେ ଗୋଟିଏ ବୈଠକ କଲେ । ଗୋଟାଏ ବଡ଼ ଗୋଲ ଟେବୁଲ ଚାରିପଟେ ସମସ୍ତେ ବସି ଆଲୋଚନା କରିଲେ ବୋଲି ତାକୁ କୁହାଗଲା "ଗୋଲଟେବୁଲ ବୈଠକ" । ଭାରତରୁ ଯେଉଁମାନଙ୍କୁ ଲୋକଙ୍କ ପ୍ରତିନିଧି ବୋଲି ଡକାଇଲେ, ସେମାନଙ୍କ ଭିତରୁ ଅଳ୍ପ କେତେ ଜଣଙ୍କୁ ବାଦ୍‌ଦେଲେ ଅନ୍ୟମାନଙ୍କର ଲୋକଙ୍କ ସହିତ କିଛି ସଂପର୍କ ନ ଥିଲା । କିଛି ଦିନ ଚଷୁକୁଟା କାମ କଲାପରେ ଦେଖାଗଲା ଯେ ଗାନ୍ଧୀଙ୍କୁ ଯଦି ସେ ବୈଠକକୁ ଡକା ନ ଯାଉଛି କିଛି ଫଳ ହେବ ନାହିଁ । କିନ୍ତୁ ଗାନ୍ଧୀ ତ ସେତେବେଳେ ଜେଲ ଭିତରେ ବନ୍ଦୀ । ତାଙ୍କ ସାଙ୍ଗକୁ କଂଗ୍ରେସର ସବୁ ବଡ଼ ବଡ଼ ନେତା ଓ ହଜାର ହଜାର ଦେଶପ୍ରେମୀ ଜେଲ ଭିତରେ ରହିଛନ୍ତି । ଦିନେ ଦେଖିଲା ବେଳକୁ ମହାତ୍ମା ଗାନ୍ଧୀଙ୍କୁ ଜେଲରୁ ଖଲାସ କରିଦେଲେଣି । କିନ୍ତୁ ସେ କହିଲେ—ମୁଁ ଯେଉଁମାନଙ୍କ ସହିତ ପରାମର୍ଶ କଲେ ଯାଇ କିଛି କହିବି, ସେମାନେ ତ ଜେଲ ପାଚେରି ସେ ପଟେ । ମୋତେ କାହିଁକି ପଚାରୁଛ ?" ତେଣୁ କଂଗ୍ରେସର ବଡ଼ ବଡ଼ ନେତାମାନଙ୍କୁ ମଧ୍ୟ ଖଲାସ କରିଦେଲେ । ସରକାରଙ୍କ ସହିତ କିଛିଦିନ ଆଲୋଚନା ପରେ କଥା ଉଠିଲା ଗୋଟିଏ ଅସ୍ଥାୟୀ ସନ୍ଧି ହେବ । ଯେତେ ଯେତେ ରାଜବନ୍ଦୀ ଜେଲ ଭିତରେ ଅଛନ୍ତି ସମସ୍ତଙ୍କୁ ବିନା ସର୍ତ୍ତରେ ମୁକ୍ତ ଦିଆଯିବ । ତା'ହେଲେ ଯାଇ ଗାନ୍ଧୀ ବିଲାତକୁ ଯାଇ ଗୋଲ ଟେବୁଲ ବୈଠକରେ ଯୋଗଦେବେ । ଶେଷକୁ ସେଇଆ ହେଲା ।

ସରକାର ଭାବିଥିଲେ ଏଇଟା ଗୋଟାଏ ମାମୁଲି କଥା ଭଳି ହୋଇଯିବ । ଗାନ୍ଧୀ ବିଲାତ ଯିବେ । ସେଠାରେ ଆଲୋଚନା ହେବ । ବିଲାତ ସରକାର କହିବେ—"ଆମେ ତୁମ ଭାରତବାସୀଙ୍କୁ ଏଇଆ ସବୁ ଦେବୁ । ତା'ଠାରୁ ଅଧିକ ଦେବା ଆମ ପକ୍ଷରେ ସମ୍ଭବ ନୁହେଁ । ସେତିକି

Digitized by srujanika@gmail.com

ପାଇ ତୁମେମାନେ ସନ୍ତୁଷ୍ଟ ହୋଇଯାଅ । ଆମେ ଯେମିତି ରାଜୁତି କରି ଆସୁଛୁ, ସେମିତି କରୁଥିବୁ । ଭାରତ ଛାଡ଼ି ଚାଲି ଯାଅ ବୋଲି ତୁମେମାନେ ଆମକୁ କହିବ ନାହିଁ ।” ଯଦି ଗାନ୍ଧୀ ସେଥିରେ ରାଜି ହେବେ ଓ ଦେଶକୁ ଫେରି ଆନ୍ଦୋଳନ ଚଳାଇବେ, ତାଙ୍କୁ ପୁଣି ଜେଲ ଭିତରେ ଅଟକାଇ ଦିଆଯିବ ।

କିନ୍ତୁ କାର୍ଯ୍ୟରେ ଦେଖାଗଲା ଯେ ଏହି ଅସ୍ଥାୟୀ ସନ୍ଧି ଫଳରେ ଭାରତର ଲୋକମାନଙ୍କ ଭିତରେ ଗୋଟାଏ ସଂପୂର୍ଣ୍ଣ ନୂଆ ପ୍ରକାରର ଉତ୍ସାହ ଖେଳିଗଲା, ସେମାନେ ଧରିନେଲେ ଗାନ୍ଧୀଙ୍କର ଜୟ ହେଲା । ସରକାର ମୁଣ୍ଡ ନୁଆଁଇବାକୁ ବାଧ୍ୟ ହେଲେ । ଗୋଲଟେବୁଲ ବୈଠକରେ ଯଦି କିଛି ନ ହେଲା ପୁଣି ଜୋର୍‌ସୋରରେ ଲଢ଼େଇ ଚାଲିବ । ସେ ଲଢ଼ାଇକୁ ସରକାର କେବେହେଲେ ଦବାଇ ଦେଇ ପାରିବେ ନାହିଁ । ଗାନ୍ଧୀଙ୍କ ଅହିଂସା ଅସ୍ତ୍ର ଏତେଦିନେ କାମ୍ କଲା । ଲୋକେ କହିଲେ —“ଆମ ଅରି ବା ଶତ୍ରୁ ବ୍ରିଟିଶ ସରକାର ଫେରି ନାହିଁ, ଯୁଦ୍ଧ ଶେଷ ହୋଇ ନାହିଁ । ତେଣୁ ଆହୁରି ଅଧିକ ସଂଖ୍ୟାରେ ଆସି ଗାନ୍ଧୀ ଶିବିରରେ ରୁଣ୍ଡ ହୁଅ ।” ଗୀତ ବୋଲା ହେଲା—

ଅରି ଫେରି ନାହିଁ, ଯୁଦ୍ଧ ସରି ନାହିଁ,
ଆସ ମୋ ଶିବିରେ ଆସ ଭାଇ ।
ହିମାଚଳ ଶିରୁ ଶବଦ ଶୁଭଇ
ଡର ନାହିଁ ଆଉ ଡେରି ନାହିଁ ।
ଜଡ଼ ଚେତନର ବଳ କଷାକଷି
ଅସ୍ତ୍ର ଜବତ ରଣ ଏହି
ତରଙ୍ଗ ଏହାର ରୋଧିବ କିଏ ସେ
ଯୁଗ ଯୁଗାନ୍ତର ଯିବ ବହି ।
ଭକତ ଯେ ଅଛ ଦେବୀ ପଜାକର
ରକତ ମନ୍ଦାର ଡାଳିଦେଇ,
ତରୁଣ କେ ଅଛ ମରଣକୁ ଦଳି
ଦେବତା ଫେରିଏ ଉଠ ଚେଇଁ,
ଅରି ଫେରିନାହିଁ—ଅରି ଫେରି ନାହିଁ ।

Digitized by srujanika@gmail.com

ଦେଢ଼ଶହ ବର୍ଷରୁ ଅଧିକକାଳ ଧରି ଗୋରା ହାକିମମାନେ ଏ ଦେଶକୁ ଶାସନ କରୁଆସୁଥିଲେ । ସେମାନେ ରାଜା, ଆମେ ପରଜା ବୋଲି ଧରି ନେଇଥିଲେ । ଆମ ମୁହଁରେ ବଡ଼ ବଡ଼ କଥା ଶୋଭାପାଏ ନାହିଁ—ଏକଥାଟି ସେମାନେ ଆମକୁ ବରାବର ଚେତାଇ ଦେଇ ଆସୁଥିଲେ । ସେମାନଙ୍କ ଏହି କଥାର ପ୍ରତିବାଦ କଲେ ଆମକୁ ନାଲିଆଖି ଦେଖାଉ ଥିଲେ, ଏଇଟା ସତେ ଯେପରି ସେମାନଙ୍କର ଗୋଟାଏ ଅଭ୍ୟାସରେ ପଡ଼ିଯାଇଥିଲା । କେବଳ ସେମାନେ ନୁହନ୍ତି ଆମ ଭାରତୀୟମାନଙ୍କ ଭିତରୁ ଯେଉଁମାନେ ଆଇ. ସି. ଏସ୍ ଚାକରୀ ପାଇଯାଇଥିଲେ, ବଡ଼ ବଡ଼ ହାକିମ ସାଜିଯାଇଥିଲେ, ସେମାନେ ମଧ୍ୟ ନିଜକୁ ବଡ଼ ହାକିମ ବୋଲି ବିଚାରି ଆସୁଥିଲେ । ସେମାନେ ବିଚାରିଲେ—ଗାନ୍ଧୀ ସହିତ ଗୋଟାଏ ମିଳାମିଶା କରିବା ହାରା ଭୁଲ୍ ହୋଇଗଲା । ଲୋକଙ୍କର ମୁହଁ ବଢ଼ିଗଲା । ପୁଣି ଥରେ ଯଦି ସେମାନେ ମାତିବେ ଅସମ୍ଭାଳ ଅବସ୍ଥା ସୃଷ୍ଟି କରିବେ । ଏବଠାରୁ ଯେଭଳି କଥାବାର୍ତ୍ତା କଲେଣି ସେଥିରୁ ଜଣା ପଡ଼ିଯାଉଛି ସେମାନେ କଅଣ ବିଚାରୁଛନ୍ତି । "ବ୍ରିଟିଶ ସରକାର ନିଶ୍ଚୟ ଦୁର୍ବଳ ହୋଇଗଲାଣି"—ଏଇ ଧାରଣା ସେମାନଙ୍କର ତ ହୋଇଗଲା ! ଗାନ୍ଧୀ ଯଦି ବିଲାତକୁ ନ ଯାଆନ୍ତେ ଭଲ ହୁଅନ୍ତା । ସନ୍ଧିକୁ ସନ୍ଧି ଥିବ— ଏଣେ ଏଭଳି କଥା ସବୁ କରିଦେବା ଯେ ଗାନ୍ଧୀ ବିରକ୍ତ ହୋଇ ଆଉ ଗୋଲଟେବୁଲ ବୈଠକକୁ ଯିବେ ନାହିଁ ।

ସେମାନେ ସେମିତିକା କାମ କଲେ । ଶାନ୍ତିଶୃଙ୍ଖଳା ରକ୍ଷା ନାମରେ ବହୁ ଲୋକଙ୍କୁ ଗିରଫ କଲେ । କେତେକ ସ୍ଥାନରେ ଲାଠି ଚାଲିଲା । କଂଗ୍ରେସ ନେତାମାନେ ଅଧୀର ହୋଇ ଉଠିଲେ । ଏମିତି ହେଲା ଯେ ଗାନ୍ଧୀ ନିଜେ ମଧ୍ୟ ବିଚାରିଲେ—"ଯେଉଁ ସରକାର କଥାରେ ଗୋଟାଏ ପ୍ରକାରେ କହି କାମରେ ଆଉ ପ୍ରକାରେ କରୁଛି, ସେ ସରକାରର ନିମନ୍ତ୍ରଣରେ ବିଲାତକୁ ଯାଇ ଲାଭ ବା କଅଣ ?" ଯେତେ ଯାହା ଉତ୍ତେଜନା ହେଲେ ମଧ୍ୟ ଶେଷରେ ସେ ଗଲେ । ତାଙ୍କ ସହିତ କଂଗ୍ରେସର ଆଉ ଦୁଇଜଣ ନେତା, ନେହୀ ପଣ୍ଡିତ ମଦନ ମୋହନ ମାଳବୀୟ ଓ ଶ୍ରୀମତୀ ସରୋଜିନୀ ନାଇଡ଼ୁ ଗଲେ । ଗୋଲଟେବୁଲ ବୈଠକରେ ଯେମିତିକା ସବୁ ଆଲୋଚନା ହେଲା ସେଥିରୁ ଗାନ୍ଧିଜୀ ଭଲ ଭାବରେ ବୁଝିଗଲେ ବ୍ରିଟିଶ

Digitized by srujanika@gmail.com

ସରକାର ଶାସନ କ୍ଷମତା ଛାଡ଼ିବା ପାଇଁ ଆଦୌ ରାଜି ନାହାନ୍ତି । ଯାହାସବୁ ଦେବେ ବୋଲି କହୁଛନ୍ତି ତାହାର କୌଣସି ମୂଲ୍ୟ ନାହିଁ ଏ କଥା ଜାଣିଲା ପରେ ବାପୁଜୀ ଅତି ଖୋଲା ଭାଷାରେ କହିଦେଲେ ଅତି କମ୍‌ରେ କଅଣ ହେଲେ ଭାରତ ସନ୍ତୁଷ୍ଟ ହେବ । ସେତକ ଦେବା ତ ଦୂରର କଥା, ତାହାର ଅଧା ବା ଚାରି ଭାଗରୁ ଭାଗେ ମଧ୍ୟ ଦେବାପାଇଁ ବ୍ରିଟିଶ ସରକାର ପ୍ରସ୍ତୁତ ନଥିଲା । ବିଲାତରେ ଜଣେ ବଡ଼ ନେତା ଚିଡ଼ିଲା ପୁଣି କହିଲେ—"ଏ ଯେଉଁ ଗାନ୍ଧୀ ଆସିଛି ସେ ଗୋଟାଏ ଅଧା ନଙ୍ଗଳା ଫକୀର—ସେ ପୁଣି ବଡ଼ ବଡ଼ କଥା କହୁଛି ।" ଆଣ୍ଠୁ ଲୁଚୁ ନଥିବା ଲୁଗା ଖଣ୍ଡେ ଗାନ୍ଧୀ ପିନ୍ଧନ୍ତି, ଜାମା କୁର୍ତ୍ତା ନ ଥାଏ, ଖାଲିଦେହ, ଶୀତ ହେଲେ ଖଣ୍ଡେ ଚଦର ବା ଶାଲ— ତାଙ୍କୁ ହିଁ ଲକ୍ଷ୍ୟ କରି ଚିଡ଼ିଲା ସେମିତିକା ଥଟ୍ଟା କରିଥିଲେ । ଗାନ୍ଧୀ ଦେଖିଲେ ଆଉ ସମୟ ନଷ୍ଟ କରି କିଛି ଲାଭ ନାହିଁ—ସେ ଭାରତକୁ ଫେରି ଆସିଲେ ।

## ଆସିଲା ପୂର୍ବରୁ ଚେତାଇ ଦେଲେ :

ସେ କିନ୍ତୁ ଗୋଟିଏ ବିଷୟରେ ଚେତାଇ ଦେଇ ଆସିଲେ । ସେତେବେଳକୁ ଜଣାପଡ଼ିଲାଣି ବିଲାତ ସରକାର ଆଉ ଗୋଟିଏ ଖେଳ ଖେଳିବାକୁ ବସିଛନ୍ତି । ଏ ଦେଶକୁ ଇଂରେଜମାନେ ପ୍ରଥମେ ଆସିଲାବେଳେ ଗୋଟିଏ କଥା ଲକ୍ଷ୍ୟକଲେ । ଭାରତରେ ହିନ୍ଦୁ ଓ ମୁସଲମାନ ବୋଲି ଦୁଇଟି ଧର୍ମର ଲୋକ ରହୁଥିଲେ । ହିନ୍ଦୁମାନେ ହେଲେ ଏ ଦେଶର ମୂଳ ଅଧିବାସୀ । ପରେ ମୁସଲମାନମାନେ ଆସି ରାଜୁତି କଲେ । ସେହିମାନଙ୍କ ରାଜୁତି ବେଳେ ଭାରତର ବହୁ ଲୋକ ଇସ୍‌ଲାମ ଧର୍ମ ଗ୍ରହଣ କରି ମୁସଲମାନ ହୋଇଗଲେ । ହିନ୍ଦୁମାନଙ୍କ ଉପରେ ପ୍ରଥମ ଅବସ୍ଥାରେ ସେହି ରାଜାମାନେ କିଛି କିଛି ଅତ୍ୟାଚାର କରିଥିଲେ, ପରେ କିନ୍ତୁ ଦୁଇଧର୍ମର ଲୋକେ ଭାଇ ଭାଇ ଭଳି ଚଳିଲେ । ଏଭଳି ଚଳିବାର ଗୋଟାଏ କାରଣ ଅଛି । ଯେଉଁ ମୋଗଲ ରାଜା ଏ ଦେଶରେ ରାଜୁତି କଲେ ସେମାନେ ଏହି ଦେଶରେ ସ୍ଥାୟୀ ଭାବରେ ରହିଲେ—ଆଉ ନିଜ ଦେଶକୁ ଫେରିବେ ନାହିଁ ବୋଲି ସ୍ଥିର କଲେ । ତେଣୁ ସେମାନଙ୍କୁ ଆଉ ବିଦେଶୀ ବୋଲି ଭାରତର ଲୋକେ ବିଚାରିଲେ ନାହିଁ । ଇଂରେଜମାନେ ଏ ଦେଶକୁ ମାଡ଼ି ବସି ପରାଧୀନ କରିଦେଲା ପରେ ଗୋଟାଏ କଉଶଳ କଲେ । ହିନ୍ଦୁ ଓ ମୁସଲମାନଙ୍କ

Digitized by srujanika@gmail.com

ଭିତରେ ଭେଦଭାବ ସୃଷ୍ଟି କରିବା ପାଇଁ ସବୁମନ୍ତେ ଉଦ୍ୟମ କଲେ । ଏହା ବାହାରେ ଲେଖାଇଲେ ଯେ ହିନ୍ଦୁ ମୁସଲମାନ ହେଉଛନ୍ତି ପରସ୍ପରର ଶତ୍ରୁ—ସେମାନଙ୍କ ଭିତରେ କିଛି ହେଲେ ମେଳ ନାହିଁ । ଏହି ବିଷ ବୁଣିଦେଇ ସେମାନେ ଗୋଟାଏ ଦୃଷ୍ଟିରୁ ସେମାନଙ୍କର ଲାଭକଲେ । ଗୋଲଟେବୁଲ୍ ବୈଠକ ବେଳେ ଜଣା ପଡ଼ିଲା ସେମାନେ ଆଉ ଗୋଟାଏ କୂଟଖେଳ ଆରମ୍ଭ କଲେଣି । ହିନ୍ଦୁମାନଙ୍କର ଗୋଟାଏ ବଡ଼ ଦୋଷର ସୁବିଧା ନେବାପାଇଁ ସୁନ୍ଦରମତ ଯୋଜନା କଲେ । ଦୋଷହେଲା କେତେ ଲୋକଙ୍କୁ ଆମ ସମାଜରେ ଅଛୁଆଁ କରି ରଖାଯାଇଛି । ସେମାନେ ସମସ୍ତେ ହିନ୍ଦୁ, ଆମ ଠାକୁରଙ୍କୁ ପୂଜା କରନ୍ତି, ଆମ ଶାସ୍ତ୍ରପୁରାଣକୁ ମାନନ୍ତି, ତଥାପି ସମାଜରେ ସେମାନଙ୍କ ଆସନ ବରାବର ତଳେ । ଏମିତି ହୋଇଯାଇଛି ଯେ କରଣ ବ୍ରାହ୍ମଣ ପ୍ରଭୃତି ଉଚ୍ଚ ଜାତି, ପାଣ କଣ୍ଡରା, ହାଡ଼ି, ବାଉରୀ ନୀଚ ଜାତି ବୋଲି ଗୋଟାଏ କଥା ଚଳି ଆସିଛି । ବିଲାତ ସରକାର କହିଲେ ଏଣିକି ଭାରତରେ ଯେତେବେଳେ ଭୋଟ ହେବ ସେତେବେଳେ ଏହି "ଅଛୁଆଁ" ଲୋକେ ଅଛୁଆଁ ପ୍ରାର୍ଥୀଙ୍କୁ ଭୋଟଦେବେ—ପ୍ରତିନିଧି ବାଛିବେ । ଗାନ୍ଧୀ କହିଲେ—"ଏକଥା କଦାପି ବରଦାସ୍ତ କରାଯିବ ନାହିଁ । ଏମିତି କଲେ ହିନ୍ଦୁ ସମାଜ ଦୁ'ଟା ଗୋଷ୍ଠୀରେ ଭାଗଭାଗ ହୋଇଯିବ । ଉଭୟ ଗୋଷ୍ଠୀ ଭିତରେ ବିବାଦ ବଢ଼ିବ । ପ୍ରତି ଗାଁରେ ଦୁଇ ଦୁଇଟା ଦଳ ହୋଇଯିବ । ଏ ଦେଶରେ ଆଉ ଏକତା ରହିବ ନାହିଁ । ଏଭଳି ଭିନେ ଭିନେ ଭୋଟ ବ୍ୟବସ୍ଥା ଯଦି କରିବ ମୁଁ ତାଆର ବିରୋଧ କରିବି । ସେଥିପାଇଁ ଜୀବନ ଦେବି । ତୁମେତ ଜାଣ ମୁଁ ଅହିଂସା ନୀତି ଧରିଛି । ଏହି ନୀତିର ଗୋଟାଏ ବଡ଼ ଅସ୍ତ୍ର ହେଲା ଅନଶନ । ତୁମ ଖରାପ ମତଲବର ପ୍ରତିବାଦ କରି ମୁଁ ଅନଶନ କରିବି ଓ ନିଜର ପ୍ରାଣ ଦେବି ।" ଏତିକି କହିଦେଇ ସେ ବିଲାତ ଛାଡ଼ି ଭାରତକୁ ଚାଲି ଆସିଲେ ।

## ଆମିମାନେ ବନ୍ଦୀ ହେଲେ :

୧୯୩୨ ଜାନୁୟାରୀ ଆରମ୍ଭରେ ସେ ଭାରତରେ ପହଞ୍ଚିଲା ବେଳକୁ ଦେଖିଲେ ଦେଶର ଚାରିଆଡ଼େ ସରକାର ଦମନ ଲୀଳା ଚଳାଇଛି । ତେଣେ ଗୋଲଟେବୁଲ ବଇଠକରେ ମଧୁର ବଚନ, ଏଣେ ଭାରତରେ ଏଭଳି

Digitized by srujanika@gmail.com



ଅତ୍ୟାଗ୍ଭର—ଏହାର କାରଣ କଅଣ ବୋଲି ସେ ବଡ଼ଲାଟଙ୍କୁ ପଚ୍ଭରିଲେ । ତାଙ୍କୁ ଲେଖିଲେ—"ଏ ବିଷୟରେ ମୁଁ ତୁମ ସହିତ କିଛିଏ ଆଲୋଚନା କରନ୍ତି ।" ଏ ଚିଠିର ଜବାବରେ ତାଙ୍କୁ ଗିରଫକରି ନିଆଗଲା । କଂଗ୍ରେସ ଗୋଟିଏ ବେଆଇନ ଅନୁଷ୍ଠାନ ବୋଲି ସରକାର ଘୋଷଣା କରିଦେଲେ । ଯିଏ ସେ ଅନୁଷ୍ଠାନରେ ରହିବେ ତାଙ୍କୁ ଗିରଫ କରାଯିବ । ଯିଏ କଂଗ୍ରେସ ଲୋକଙ୍କୁ ଘରେ ରଖିବ, ଖାଇବା ପିଇବାକୁ ଦେବ, ତାଙ୍କୁ ମଧ୍ୟ ଜେଲ ଜୋରିମାନା ଦଣ୍ଡ ଦିଆଯିବ – ଏଇ ହେଲା ସରକାରଙ୍କ ଆଦେଶ । କଂଗ୍ରେସର ଯେତେ ଅଫିସ୍ ଥିଲା, ଆଶ୍ରମ ଥିଲା ସେଗୁଡ଼ିକୁ ସରକାର ଦଖଲ କରିଗଲେ । କଟକର ସ୍ୱରାଜ୍ୟ ଆଶ୍ରମକୁ ମଧ୍ୟ ପୁଲିସ ଆସି ନିଜ ଦଖଲକୁ ନେଇଗଲେ ।

ଦେଶର ଚ୍ଭରିଆଡ଼ୁ ଲୋକ ତେଜି ଉଠିଲେ । ଆଇନ୍ ଅମାନ୍ୟ କଲାରୁ ଗିରଫ, ଲାଠି ଗୁଳି ଚ୍ଭଲିଲା ସରକାରଙ୍କ ତରଫରୁ । ଏଥର କଂଗ୍ରେସକୁ ମୂଳପୋଛ କରି ଦିଆଯିବ ବୋଲି ସରକାର ହୁଙ୍କାର ଛାଡ଼ୁଥାଏ । ଦେଶବାସୀ ତାହାର ଜବାବରେ ଆଇନ ଅମାନ୍ୟ କରୁଥାନ୍ତି । "ତୁମ ଶାସନକୁ ଆମେ ମାନୁନାହୁଁ ତେଣୁ ତୁମ କଚେରୀରେ କେହି ବସି ବିଚ୍ଭର ଫାରସ ଚଳାଇ ପାରିବ ନାହିଁ" ବୋଲି କହି ସତ୍ୟାଗ୍ରହୀମାନେ କୋର୍ଟ ଭିତରେ ପଶି ଅଦାଲତ ଭିତରେ ପଶି ହାକିମଙ୍କୁ କହିଲେ "ଚଉକି ଛାଡ଼ ।" କାଗଜପତ୍ର ଚିରିଦେଲେ । ସେମାନଙ୍କୁ ଯେତେ ମାଡ଼ ହେଲେ ମଧ୍ୟ ଡରିଲେ ନାହିଁ । ଯେଉଁ ଦୋକାନରେ ବିଲାତି ଲୁଗା ବିକ୍ରି ହେଉଥିଲା ସେ ଦୋକାନ ଭିତରକୁ ଲୋକଙ୍କୁ ଛାଡ଼ିଲେ ନାହିଁ ପିକେଟିଙ୍ଗ କରି । ପୁଲିସ ସେଥିରେ ବାଧାଦେଲେ । ଗୁଳିଲା ଗିରଫ, ଲାଠିମାଡ଼ । ଦେଶର ଚ୍ଭରିଆଡ଼େ "ଆଶ୍ରମ ଦଖଲ କଂଗ୍ରେସ ଅଫିସ୍ ଦଖଲ" କାମ ଚ୍ଭଲିଲା । କଟକ ସହରରେ କଅଣ ହେଲା ସେଥିରୁ ଜଣା ପଡ଼ିଯିବ ଅନ୍ୟ କେଉଁଠି କେମିତି କଅଣ ହେଉଥିବ । କାଠଯୋଡ଼ି କୂଳରେ ରହିଛି ସ୍ୱରାଜ୍ୟ ଆଶ୍ରମ । କଂଗ୍ରେସ କର୍ମୀ ଠିକ୍ କଲେ ପୁଲିସ ଦଖଲରୁ ତାକୁ ଉଦ୍ଧାର କରିବେ । ଜିଲ୍ଲା କଲେକ୍ଟରଙ୍କୁ ରୀତିମତ ନୋଟିସ ଦେଇ ଜଣାଇଦେଲେ କେଉଁଦିନ ତା' ଭିତରେ ପଶିବେ । ଠିକ୍ ସମୟରେ ତା'

Digitized by srujanika@gmail.com

ଭିତରେ ଛ' ଜଣ ଯାଇ ପଶିଗଲେ । କଟକରେ ଜଣେ ଗୋରା ପୁଲିଶ ସାହେବ ଥାଆନ୍ତି । ସେ ନିଜେ ଆସି ଏମାନଙ୍କୁ ମାଡ଼ଦେବା ଆରମ୍ଭ କଲେ । ସେମାନଙ୍କୁ ଏତେ ମାଡ଼ ଦିଆଗଲା ଯେ ସମସ୍ତେ ଚେତା ହରାଇଲେ । ଗୋଟାଏ ମଟରରେ ବସ୍ତା ମାଡ଼ିଲା ଭଳି ପକାଇ ଡାକ୍ତରଖାନାକୁ ନେଇଗଲେ । ତାହା ପରଦିନ ଜଣେ ଆସିଗଲେ । ହଜାର ହଜାର ଦେଖଣାହାରି ରୁଣ୍ଡ ହୋଇଥାନ୍ତି । ପୁଣି ସେହି ପୁଲିସ ସାହେବ ଆସି ଏଭଳି ମାଡ଼ ଦେଲେ ଓ ଦିଆଇଲେ ଯେ ସତ୍ୟାଗ୍ରହୀଙ୍କ ମୁଣ୍ଡ ଫାଟି, ପିଠି ଫାଟି ଆଶ୍ରମ-ହତା ରକ୍ତରେ ଭିଜିଗଲା । ଜଣକୁ କୋଠା ଉପରୁ ସାହେବ ଠେଲି ଦେଲାରୁ ତଳେ ପଡ଼ି ତାଙ୍କ ମୁଣ୍ଡ ଫାଟିଗଲା । ଆଶ୍ରମ ବାହାରେ ହଜାର ହଜାର ଲୋକ "ମହାତ୍ମା ଗାନ୍ଧୀ କି ଜୟ" ଧ୍ୱନି ଦେବାରୁ ସେମାନଙ୍କୁ ପୁଲିସ ଗୋଡ଼ାଇ ପିଟିଲେ । ଦୁଇଜଣଙ୍କ ମୁଣ୍ଡ ଫଟାଇ ନାଳ ଭିତରେ ପକାଇଦେଲେ । ବର୍ଷାଦିନେ ନାଳରେ ପାଣି । ସେ ପାଣି ଏହି



ଦୁଇ ତିନିଜଣଙ୍କ ରକ୍ତରେ ଲାଲ ହୋଇଗଲା । ସହରରେ ଘୋର ଚହଳ । ଲୋକେ ଦଳ ଦଳ ହୋଇ ଏହି ଗୀତ ବୋଲି ବୋଲି ଏ ବଜାରରୁ ସେ ବଜାରକୁ ଯାଉଥାଆନ୍ତି—

"ଭାଇ, ମରିବା ତ ଦିନେ ମରିବା
ଟେକିଲ ମେଣ୍ଟା ପରି ପାଞ୍ଚଣକୁ ଡରି
(ଏଠି) ଘୁଷୁରି ପରି କି ରହିବା ?
ମରିବା ତ ଦିନେ ମରିବା ।

Digitized by srujanika@gmail.com

ଜାତୀୟ ପତାକା ଜାତିର ଜୀବନ
ତାକୁ ଭାଙ୍ଗି ଚୂରି କଲେ ଅପମାନ
ସ୍ୱରାଜ୍ୟ ଆଶ୍ରମ କଲେ ବେଦଖଲ

କପଟି ଏହାଙ୍କୁ ସହିବା
ମରିବା ତ ଦିନେ ମରିବା ।

ସାନ ସାନ ପିଲା ଖାଉଛନ୍ତି ବେତ
ଥପ ଥପ ବହି ପଡ଼ଇ ରକତ
ଜୀବନ ବିକଳେ ଆଖି ଛଳ ଛଳ

ଆଖିରେ ଏହାକି ଦେଖିବା ?
ମରିବା ତ ଦିନେ ମରିବା ।

ଗୋରା ସର୍ଜଣ୍ଟର ଗୋଇଠା ପ୍ରହାର
ନାହିଁ କରେ ତା'ର କିଛି ପ୍ରତିକାର ?
ଧ୍ରୁବ ପ୍ରହଲ୍ଲାଦ ବଂଶଧର ହୋଇ

ଧିକ ଆମ ଦେହ ଧରିବା
ମରିବା ତ ଦିନେ ମରିବା ।"

ଯୁବକମାନେ, ଯୁବକମାନେ ଚେଇଁଉଠିଲେ । ପୁଲିସଙ୍କୁ ନଡରି ସେମାନେ ଦଳ ଦଳ ହୋଇ ସରକାରୀ ବିରୋଧୀ ଗୀତ ଗାଉଥାନ୍ତି । ରାସ୍ତାର ଦୁଇପାଖରେ ଶହ ଶହ ଲୋକ ଜମାହୋଇ "ମହାତ୍ମା ଗାନ୍ଧୀଙ୍କ ଜୟ" ଧ୍ୱନି କରୁଥାଆନ୍ତି । ସେମାନେ ଗାଉଥାଆନ୍ତି—

ଏ ଯେ ଗୁଣ୍ଡା ସରକାର
ଏ ଯେ ହୁଣ୍ଡା ସରକାର
ଗୁଣ୍ଡାମି ସଙ୍ଗେ ହୁଣ୍ଡାମି ତାର ନିତ୍ୟ କାରବାର ।

ଆଇନ କାନୁନ ନାହିଁ ତାର କିଛି
ମନଖୋଜ ତାର ଗତି
ବୁଦ୍ଧି ବଳ ତାର ଚୂଲିକି ଗଲାଣି
(ଖାଲି) ଚରଣ ଚୂଟିଆ ମାତି ।

Digitized by srujanika@gmail.com

ଅଣ୍ଟାଗୁଞ୍ଜା ଦେଇ ଆମର ଭାଇଙ୍କି
ଚଳାଏ ଶୋଷଣ କଳ
ଆମର ପିଠିରେ ଆମର ଠେଙ୍ଗା
ବାଣ୍ଡକୁ ଦେଖାଏ ବଳ ।
ଲୋକ ଦେଖାଣକୁ ମାଳ ମାଳ କରି
କଟେଇ କରନ୍ତି ଛୁଡ଼ା
ଭିତରେ ତାହାର ଧନ ଢ଼'ପଦାରେ
ସବୁ ଉଡ଼ାଇବ ଆଡ଼୍ଡା ।
ଜାତି ଭାଇଙ୍କର ଗୁଣ ଫୁଲେ ତାର
ଆମେ ଗଣି ମରୁ କର
ଗଉଡ଼ ପୁଅର ଗୁହାଳ ଧୋଇବ
ମୋଟ ପୁଅ ବାହାଘର ।
ମଦନ ମଦନ ସୁନା ବୋହୂନେଲା
ପଡାକୁ କରନ୍ତି ସନ୍ଧ
ଭିତରେ ଭିତରେ ଅଣ୍ଟା ଭିଡ଼ିଥିଲା
କଂଗ୍ରେସକୁ ଦେବ ଭାଙ୍ଗି ।
ଠକବା ସକାଶେ ଗୋଲ ଟେବୁଲରେ
ଢ଼'ଥର ବୁଣିଲା ଟଙ୍କା
ଗୋଲ ଟେବୁଲ ଯେ ଗୋଅଲ ନୋହିଲା
ଗୃହଆଡ଼ ଯାକ ବଙ୍କା ।
ସବୁ ଗ୍ରେଚ ତାର ଧରା ପଡ଼ିବାରୁ
ହୁଏ ସେ ଅଥୟ ଚିତ୍ତ
ରକତ ଶୁଭଳ ଗ୍ଭେବାଇ ହେଉଛି
ମଥାରେ ଚଢ଼ନ୍ତେ ପିତ୍ତ ।
ବାତୁଳ ବଳୁଆ ଗଛ ଧରି ସେ ତ
ଆଇନ କରୁଛି ଜାରି
ଆପଣା ଛୁଇକୁ ଆପେ ସେ ଡରୁଛି
ନିରୀହ ପ୍ରଜାଙ୍କୁ ମାରି ।

Digitized by srujanika@gmail.com

ତୋପ ବନ୍ଧୁକର ଶରଣ ପଶିଛୁ
ଠେଙ୍ଗାକୁ କରୁଛୁ ପୂଜା
ଲୋକଙ୍କ ଇଚ୍ଛା ତ ତଳେ ନାହିଁ ଏଠି
ମନକୁ ମନକୁ ରଜା ।
କଳର ବାଘ ଏ ଗର୍ଜନ ଶୁଣି
ଭୟରେ ନ ଯାଅ ହଟି
ବେପାର କଳଟି ମୋଡ଼ିଦେଲେ ତାର
କାମୁଡ଼ ପଡ଼ିବ ମାଟି ।

## ମୋ ଜୀବନକୁ ପାଣି ଛଡ଼ାଇ ଦେଲି :

ଗାନ୍ଧୀ ଜେଲରେ ଥାଆନ୍ତି । ବିଲାତରୁ ଘୋଷଣା ପ୍ରକାଶ ପାଇଲା— "ଅଛୁଆଁ" ମାନେ ଅଲଗା ଭୋଟ ଦେବେ, "ଉଚ୍ଚ ଜାତି"ର ହିନ୍ଦୁଙ୍କ ସହିତ ମିଳାମିଶି ନୁହେଁ । ଗାନ୍ଧୀ ଅନଶନ କଲେ । ଯେ ପର୍ଯ୍ୟନ୍ତ ଏହି ବ୍ୟବସ୍ଥା ନ ବଦଳୁଛି ସେ ଅନ୍ନ ଜଳ ଛୁଇଁବେ ନାହିଁ । ବାଷଠି ବର୍ଷ ବୟସର ଜଣେ ଲୋକ ଅନ୍ନ ଜଳ ଛାଡ଼ିଦେଲେ ଯାହା ହେବାର କଥା ତାହାହିଁ ହେଲା । ସେ ଦୁର୍ବଳ ହୋଇପଡ଼ିଲେ । ଦେଶରେ ଚହଳ ପଡ଼ିଗଲା । ଅଛୁଆଁ ଲୋକଙ୍କ ନେତା ଭାବରେ ବିଲାତ ସରକାର ସ୍ୱୀକାର କରୁଥାଆନ୍ତି ଜଣେ ପ୍ରସିଦ୍ଧ ଲୋକଙ୍କୁ । ତାଙ୍କ ନାଁ ଆମ୍ବେଦକର । ସେ ଜଣେ ଖୁବ୍ ପଢ଼ାଶୁଣା ଲୋକ—ଓକିଲାତିରେ ଦେଶସାରା ତାଙ୍କର ଖ୍ୟାତି । ପିଲାଦିନୁ ସେ ସମାଜରେ ଲାଞ୍ଛନା ସହିଛନ୍ତି ଜଣେ "ଅଛୁଆଁ ଜାତିର" ଲୋକ ହୋଇଥିବାରୁ । ସେ ଗୋଲଟେବୁଲ ବୈଠକରେ ଦାବୀ କରିଥିଲେ ତାଙ୍କ ଲୋକେ ଅଲଗା ଭୋଟ ଅଧିକାର ପାଆନ୍ତୁ ବୋଲି । ତାଙ୍କୁ ଏ ଦେଶର ସବୁ ନେତା ବୁଝାଇଲେ ଗାନ୍ଧୀଙ୍କ ଜୀବନରକ୍ଷା କରିବାପାଇଁ । ସେ ଜଣେ ଦେଶପ୍ରେମୀ । ସବୁକଥା ବୁଝୁଥାଆନ୍ତି— କିନ୍ତୁ କହୁଥାଆନ୍ତି—"ଆମ ଲୋକଙ୍କୁ ତୁମେ ଉଚ୍ଚ ଜାତିର ଲୋକେ ଏ ପର୍ଯ୍ୟନ୍ତ ଅଛୁଆଁ କରି ରଖିଛ । ତେଣୁ ଆମେ ଏଭଳି ଦାବୀ କଲୁ । ଆମେ ଭଲକରି ଜାଣୁ ଗାନ୍ଧୀଙ୍କର ଆମ ଅଛୁଆଁମାନଙ୍କ ପ୍ରତି ଅତି ମାତ୍ରାରେ ସ୍ନେହ ରହିଛି । କିନ୍ତୁ ତାଙ୍କ କଥା ମାନୁଛି କିଏ ? ଆଇନରେ ଆମର ସ୍ୱତନ୍ତ୍ର ଅଧିକାର ନ ରହିଲେ ଆମେ ତ ଚିରଦିନ ଏମିତି ତଳେ ପଡ଼ିଥିବୁ ।" ସମସ୍ତେ



Digitized by srujanika@gmail.com

ଜେଲଖାନାକୁ ଯାଇ ଗାନ୍ଧୀଙ୍କୁ ଭେଟିଲେ । ସେତେବେଳକୁ ତାଙ୍କ ଅବସ୍ଥା ଖରାପ ହୋଇ ଆସିଲାଣି । ଶେଷରେ ଗୋଟାଏ ବାଟ ବାହାର କରାଗଲା । ଲୋକସଭା ବିଧାନସଭାକୁ କେତେ ଜଣ ଅଛୁଆଁ ଜାତିର ଲୋକ ଯିବେ ତାହା ଠିକ୍ ହୋଇଗଲା । ଭୋଟ କିନ୍ତୁ ଉଚ୍ଚ ନୀଚ ବୋଲି କୁହାଯାଉଥିବା ସମସ୍ତେ ଦେବେ । ଏହାକୁ କୁହାଗଲା "ମିଳିତ ଭୋଟ ବ୍ୟବସ୍ଥା ।" ଗାନ୍ଧୀଙ୍କ କଥାର ମରମଟା ରହିଲା ବୋଲି ସେ ମାନିଲେ ଓ ବିଲାତ ସରକାର ଏହି କଥାକୁ ଗ୍ରହଣ କରିଗଲେ, ସେ ଅନଶନ ଭାଙ୍ଗିବେ ବୋଲି ଜବାବ ଦେଲେ । ବିଲାତ ସରକାର ଏହି ନୂଆ ବ୍ୟବସ୍ଥାକୁ ଗ୍ରହଣ କରିଗଲେ । ଅନଶନ ଶେଷ ହେଲା । ଦେଶ ଲୋକେ ସ୍ଥିରକଲେ ଯେ ସମାଜରୁ ଛୁଆଁ ଅଛୁଆଁ ଭେଦ ଉଠିବ ।

## ସେମାନେ ହେଲେ "ହରିଜନ" :

କିଛିଦିନ ପରେ ଗାନ୍ଧୀଙ୍କୁ ଜେଲରୁ ଖଲାସ କରି ଦିଆଗଲା । ଦେଶର ଚାରିଆଡ଼େ ବୁଲି ଲୋକଙ୍କୁ ବୁଝାଇଲେ ସମାଜରୁ ଛୁଆଁ ଅଛୁଆଁ ଭେଦଭାବ ଉଠାଇ ଦେବାପାଇଁ । ସେତିକିବେଳେ ସେ କହିଲେ— ହିନ୍ଦୁସମାଜ ଯେଉଁମାନଙ୍କୁ ନିଜଠାରୁ ଦୂରେଇ ଦେଇ ଅଛୁଆଁ କରି ରଖିଛି ସେମାନଙ୍କୁ ହରି ବା ଭଗବାନ ନିଜ କୋଳକୁ ନେଇ ଯାଇଛନ୍ତି । ତେଣୁ ସେମାନଙ୍କୁ ଏଣିକି କୁହାଯିବ "ହରିଜନ" । ଏହି ନାଁଟି ସେ ବାହାର କରିଥିଲେ ଜଣେ ଧର୍ମପ୍ରାଣ ଅଛୁଆଁ ଲୋକଙ୍କ ପ୍ରସ୍ତାବକୁ ଗ୍ରହଣ କରି । ଗାନ୍ଧୀଙ୍କ ଗସ୍ତକୁ କୁହାଗଲା "ହରିଜନ ଗସ୍ତ" । ୧୯୩୪ରେ ମହାତ୍ମାଜୀ ଓଡ଼ିଶାକୁ ଆସିଥିଲେ । ପୁରୀଠାରୁ ଭଦ୍ରଖ ପର୍ଯ୍ୟନ୍ତ ଚାଲି ଚାଲି ଗସ୍ତକରି ହଜାର ହଜାର ଲୋକଙ୍କୁ ଛୁଆଁ ଅଛୁଆଁ ଭେଦ ଉଠାଇଦେବା ପାଇଁ କହିଥିଲେ । ସେହି ସମୟରେ ଓଡ଼ିଶାର ହରିଜନମାନଙ୍କ ଭିତରେ ଗୋଟାଏ ଅପୂର୍ବ ଜାଗରଣ ଦେଖା ଦେଇଥିଲା । ସେମାନଙ୍କ ପିଲାଏ ଯେମିତି ମାଗଣାରେ ପାଠ ପଢ଼ିବେ ତାହାର ବ୍ୟବସ୍ଥା ଗାନ୍ଧୀଙ୍କ ତରଫରୁ କରି ଦିଆଗଲା । ଯେଉଁ



Digitized by srujanika@gmail.com

ପିଲାମାନେ କେବେହେଲେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ ଯେ ଦିନେ ପାଠ ପଢ଼ି ଡାକ୍ତର ଇଞ୍ଜିନିୟର ହାକିମ ହେବେ, ସେମାନଙ୍କ ରହିବା ଖାଇବା ପାଇଁ ବୋଡିଙ୍ଗଘର, ହଷ୍ଟେଲ ସବୁ ଖୋଲି ଦିଆଗଲା । ଓଡ଼ିଶାର ହରିଜନ ପିଲାଙ୍କ ପାଇଁ କଟକରେ ଯେଉଁ ବୋଡ଼ିଙ୍ଗ ଖୋଲାଗଲା ତା ନାଁ ରଖାଗଲା "କୈବଲ୍ୟ କୁଟୀର" । ହୁଅନ୍ତୁ ବା ନ ହୁଅନ୍ତୁ ବଡ଼ ହେବାର ଯେ ବାଟ ଫିଟିଗଲା ଏଇ ଥିଲା ହରିଜନ ପିଲାଙ୍କର ଆନନ୍ଦ—ସେମାନଙ୍କ ବାପମା'ଙ୍କ ସନ୍ତୋଷ । ଦଳେ ଦଳେ ହରିଜନଙ୍କୁ ସଂକୀର୍ତ୍ତନ ଗୀତ ଶିଖାଗଲା । ଜାଣିଥିବ୍ କବି ଙ୍କରବାବୁ ସେମିତିକା ଗୋଟିଏ ଗୀତ ଲେଖିଦେଇ କହିଲେ— ତୁମେମାନେ ତ ହରିଜନ ହୋଇଗଲ । ଏଣିକି ଜଗନ୍ନାଥଙ୍କୁ ଯାଇ ପଚାର ତୁମକୁ ସେ ଏମିତିକା ଅନାଥ କରି କାହିଁକି ରଖିଛନ୍ତି । ସେ ପରା ଜଗତର ନାଥ— ତୁମର ଏହି ଦୁଃଖ କ'ଣ ସେ ବୁଝିପାରୁ ନାହାନ୍ତି ? ସେହି ଗୀତ ବୋଲି ସେମାନେ ଯେତେବେଳେ କୀର୍ତ୍ତନ କରି ବୁଲିଲେ ଅନେକ କରଣ ବ୍ରାହ୍ମଣ ଖଣ୍ଡାୟତଙ୍କ ଆଖିରୁ ମଧ୍ୟ ଲୁହ ଝରିପଡ଼ିଲା । ସେମାନେ ସମସ୍ତେ କୀର୍ତ୍ତନରେ ଭାଗନେଇ ଗାଁ ଦାଣ୍ଡରେ ନାଚିଗଲେ । ଗୀତଟି ହେଲା—

ଚାଲ ଦିନେ ଭାଇ ବଡ଼ଠାକୁରଙ୍କୁ ପଚାରିବା...

ଚାଲ ଦିନେ ଭାଇ ବଡ଼ର ଉଚ୍ଚାର
ସଫା ପଚାରି ତାହାଙ୍କୁ ଆସିବା···

ଜଗନ୍ନାଥ ନାମ ମହିକେ ଜଗତେ
ଜଗତର ନାଥ ବୋଲନ୍ତି ସମସ୍ତେ
ଆମ ଘର କି ଥିବୁ ଜଗତୁ ବାହାର
ଆମେ, ଅନାଥ କାହିଁକି ରହିବା ?

ଥକା ନୋହେ କେବେ ଟକୋଡ଼ୋଳା ତାର
ଅଣୁ ପରମାଣୁ ଦେଖଇ ବିଶ୍ୱର
ପତିତପାବନ ବାନା ଉଡ଼ାଏ ସେ
ଆମେ ଏତେ ଦୁଃଖ କାହିଁ ସହିବା ?

ଯାହାଙ୍କ ସେବାରେ ଖଟି ଦିବାରାତି
ଜଳାଇ ଦେଉଛୁ ଏ ଜୀବନବତୀ
ଆମ ଛୁଇଁ ଦେଖି ତାଙ୍କ ନାହିଁ ତିଅଁ
ଏହା, କେଉଁ ବେଦ ମତ ବୁଝିବା ।

Digitized by srujanika@gmail.com

ଆମକୁ ଛୁଇଁଲେ ହୁଅନ୍ତି ସେ ଛୁଆଁ
ବାସନ୍ଦ ଆମକୁ ଜାଗା ପାଣି ନାଆଁ
ନଜେ ପରାଧୀନ ଇଚ୍ଛନ୍ତି ଆମକୁ
କଷି, ଦୋହରି ଫାଶରେ ବାନ୍ଧିବା ।

ଆମ ଦୁଃଖ ସୁଖେ ନାହିଁ କାର ଲକ୍ଷ୍ୟ
ପେଟ ଜ୍ୱଳନରେ ଭକ୍ଷିଛୁ ଅଭକ୍ଷ
ଲୁଚାଇବା କାହିଁ ଦୀନବନ୍ଧୁ ଆଗେ
ସତ କଥା ଖୋଲି କହିବା ।

ଲକ୍ଷ୍ମୀ ଠାକୁରାଣୀ ତାହାର ଘରଣୀ
ଜାଣନ୍ତି ସେ ଆମ ଦୁଃଖର କାହାଣୀ
ଶୁଚବନ୍ତ ହୋଇ ସାଙ୍ଗେ ନେବା ତାଙ୍କୁ
ସାକ୍ଷୀ ତାଙ୍କୁ ଆମେ ମାନିବା ।

ଶ୍ରୀବତ୍ସ ବ୍ରାହ୍ମଣ ମାଇଲା ଗୋଇଠା
ବଣିଆ ଶବର ଖୋଇଲା ଅଇଁଠା
ହରିଆ ଯବନ ଦାଣ୍ଡେ ନଚାଇଲା
ଆମେ କାହିଁ ଖରୁ ହୋଇବା ?

ଆମଠାରେ ଯେବେ ନାହିଁ ତାର ଲୋଭ
ଦେହ ଧରି କାହିଁ ରହିବା ଅଛିବ ?
କୃପାନିଧି ନାମ ସଂସାରୁ ବୁଡ଼ାଇ
ନଷ୍ଟେ, ବାରିନିଧି ଜଳେ ଝାସିବା ।

କହୁଛନ୍ତି ଲୋକେ ଗାନ୍ଧୀ ତାର ଲୋକ
ଆସିଛୁ ଟାଳିବ ସାରା ପୃଥ୍ୱୀ ଦୁଃଖ
କଥା ଯେବେ ସତ, ନେଇ ଗାନ୍ଧୀ ମତ
ଚାଲ, ମୁକତି ମଣ୍ଡପେ ବସିବା ।

## ଏ ଲୋକତ କମିଆ ଜାଣେ !

ଊଣେଇଶ ଶହ ତେଉତିରିଶ ମସିହା ଜୁନ ମାସ ଆଠ ତାରିଖରେ ବାପୁଜୀଙ୍କର ହରିଜନ ପଦଯାତ୍ରା ଶେଷ ହୋଇଗଲା । ସେତେବେଳକୁ

Digitized by srujanika@gmail.com

ସରକାର ଗୋଟିଏ କଥା ଭାବି ନେଇ ଟିକିଏ ମନ ଖରାପ କଲେଣି। ସେମାନେ ଧରିନେଇଥିଲେ ଅଢ଼େଇବର୍ଷ କାଳ ଦମନନୀତି ଚାଲିଲା ପରେ କଂଗ୍ରେସ ଲୋକଙ୍କ ମନ ନିଶ୍ଚୟ ଦବି ଯାଇଥିବ। ସେମାନଙ୍କ ଭିତରେ ଆଉ ଉତ୍ସାହ ନଥିବ। ଜନସାଧାରଣ ମଧ୍ୟ ବୁଝିଗଲେଣି ଯେ ଗାନ୍ଧୀଙ୍କ କଥାରେ ଚାଲି ଆଉ କିଛି ଲାଭ ନାହିଁ। କିନ୍ତୁ ଗାନ୍ଧୀ ଗୋଟାଏ କୌଶଳ କରି ଯେଉଁ "ହରିଜନ ଯାତ୍ରା" ଆରମ୍ଭ କରିଦେଲା ସେଥିରେ ଦୁଇଟା କାମ ସେ ଏକାବେଳେକେ କରିନେଲା। ପ୍ରଥମ ଓ ସବୁଠାରୁ ବଡ଼ କାମ ହେଲା ତାଙ୍କ ସଭାକୁ ହଜାର ହଜାର ଲୋକ ଆସିଲେ। ତାଙ୍କ ବାଣୀ ଶୁଣିଲେ। ଗାନ୍ଧୀଙ୍କ ଭାଷଣ ଭିତରେ ନ ଥିଲା ବା କଅଣ ? ଦ୍ୱିତୀୟଟି ହେଲା —ଶହ ଶହ କଂଗ୍ରେସ କର୍ମୀ ତାଙ୍କ ଚାରିପଟେ ଆସି ରୁଣ୍ଡ ହୁଅନ୍ତି। ସବୁ ବିଷୟରେ ଆଲୋଚନା ହୁଏ। କର୍ମୀମାନେ ନୂଆ ଉତ୍ସାହ ନେଇ ଫେରନ୍ତି। ନିକଟରେ ଶେଷ ଲଢ଼ାଇ ହେବ ସ୍ୱାଧୀନତା ପାଇଁ। ସେଥିପାଇଁ ଲୋକଙ୍କୁ ପ୍ରସ୍ତୁତ କରିବାକୁ ହେବ। କର୍ମୀମାନେ ଗାଁ ଗହଳରେ ଯାଇ ବସିଯାଆନ୍ତୁ। ସେମାନଙ୍କ ଭିତରେ ରହି ଲୋକଙ୍କୁ ଚହ୍ନନ୍ତୁ, ସେମାନେ ଯେମିତି ଦି'ପଇସା ପାଇବେ ସେଥିପାଇଁ ନୂଆ ନୂଆ ଧନ୍ଦା ଶିଖାନ୍ତୁ—ଏଇଥିଲା ଗାନ୍ଧୀଙ୍କ ଉପଦେଶ। କେତେ ହଜାର କର୍ମୀ ନେତା ସତକୁ ସତ ଯାଇ ଗାଁ ଗହଳରେ ବସିଗଲେ। ଅଳ୍ପ ଦିନ ପରେ ମନେହେଲା ଏହି ଜାତିଟା ଶେଷ ସ୍ୱାଧୀନତା ଲଢ଼େଇ ପାଇଁ ମନେ ମନେ ତିଆରି ହେଉଛି। ସରକାରଙ୍କ ଭାଳେଣି ଯେ ଗାଁ ଗହଳରେ କର୍ମୀମାନେ ଯେଉଁସବୁ କାମ କରୁଛନ୍ତି ସେଥିରେ ବାଧା ସୃଷ୍ଟି କରି ହେଉ ନାହିଁ। ବରଂ ଏମିତି ହେଉଛି ଯେ ସେ କାମରେ ସାହାଯ୍ୟ ନକଲେ ଲୋକେ ସରକାରଙ୍କୁ ନିନ୍ଦା କରିବେ। ଗାନ୍ଧୀ ତ ଏମିତିକା ଗୋଟିଏ ହେଲେ କାମ ବତାଇ ନାହିଁ—ଯେଉଁଥିରେ କି ସରକାରଙ୍କର ଆପତ୍ତି ରହିବ। ଭାରତରେ ଥିବା ଗୋରା ହାକିମମାନେ କୁହାକୋହି ହେଲେ—ଏହି ଗାନ୍ଧୀ ତ ଗୋଟାଏ କମିଆ ଜାଣିଛି ! ତାକୁ ଯେତେ ବାଟେ ଛେକିଲେ ମଧ୍ୟ ସେ ଗଳିଯାଇ ପହଞ୍ଚି ଯାଉଛି କୋଟି ଜନତାଙ୍କ ପାଖରେ।

ଉଣେଇଶ ଶହ ଛତିଶ ଆସିଗଲା। ଭାରତର ମାନଚିତ୍ରରେ ଟିକିଏ ଅଦଳ ବଦଳ ହୋଇଗଲା ଦେଶ ଭିତରେ, ସେହିବର୍ଷ ପହିଲା ଦିନ ଓଡ଼ିଆ ମାନେ ଗୋଟିଏ ନୂଆ ପ୍ରଦେଶ ପାଇଲେ। ଇଂରେଜମାନେ ୧୮୦୩ରେ

Digitized by srujanika@gmail.com

ଓଡ଼ିଶାକୁ ଦଖଲ କଲାପରେ ବଙ୍ଗଦେଶ ସହିତ ମିଶାଇ ଦେଇଥିଲେ । କଲିକତାରେ ରହି ସେମାନେ ଗୋଟାଏ ବଡ଼ ଇଲାକାକୁ ଗୋଟିଏ ଶାସନ ଅଧୀନରେ ରଖିଥିଲେ । ସେହି ଇଲାକା ଭିତରେ ଥିଲା ଆଜିର ଆସାମ, ବାଂଲାଦେଶ, ପଶ୍ଚିମବଙ୍ଗ, ବିହାର, ଓଡ଼ିଶା, ମେଘାଳୟ, ନାଗାଲାଣ୍ଡ, ତ୍ରିପୁରା ପ୍ରଭୃତି । ୧୯୧୨ରେ ବିହାର ଓଡ଼ିଶା ବୋଲି ଗୋଟିଏ ଅଲଗା ପ୍ରଦେଶ ହେଲା । ଆମ ଅଞ୍ଚଳର ଶାସନ ପାଟନାରୁ ହେଲା । ଓଡ଼ିଶା ପରାଧୀନ ହେବାର ଠିକ୍ ଶହେ ବର୍ଷ ପରେ ଊଣେଇଶ ଶହ ତିନ୍ ମସିହାରେ ମଧୁସୂଦନ ଦାସ ଦାବୀକଲେ—ଓଡ଼ିଆମାନେ ଯେଉଁସବୁ ଅଞ୍ଚଳରେ ଅଛନ୍ତି ସେଗୁଡ଼ିକୁ ଏକାଠି କରି ଗୋଟିଏ ପ୍ରଦେଶ କରି ଦିଆଯାଉ । ସେ ଉତ୍କଳ ସମ୍ମିଳନୀ ଗଢ଼ିଲେ । ଯାହାହେଉ ବହୁ ଲେଖା ଲେଖି ପରେ ସରକାର ବୁଝିଗଲେ ଯେ ଓଡ଼ିଆମାନଙ୍କୁ ଗୋଟିଏ ପ୍ରଦେଶ ଦେବାକୁ ହେବ ।

ସେତେବେଳକୁ ଆଉ ଗୋଟାଏ କଥା ହୋଇଗଲାଣି । ବିଲାତରେ ଯେଉଁ ଗୋଲଟେବୁଲ ବୈଠକ କେତେଥର ବସିଥିଲା ସେଥିରେ ଗୋଟାଏ ଅଧା-ପନ୍ତରିଆ "କ୍ଷମତା ଦେବା ଆଇନ"ର ଚଠା ହେଲା । ସେହି ଚଠା ଅନୁସାରେ ବିଲାତ ପାର୍ଲିଆମେଣ୍ଟରେ ଗୋଟିଏ ଆଇନ ପାଶ୍ ହେଲା । ତାହାର ଅନୁସାରେ ଭାରତରେ ଭୋଟ ନିଆ ହେବାର କଥା । ଏବେ ଯେମିତି ପାଠୁଆ ଅପାଠୁଆ ଧନୀ ନିର୍ଦ୍ଧନ ସମସ୍ତେ ଭୋଟ ଦେଉଛନ୍ତି, ସେମିତି ଭୋଟ ଦେବା କଥା ସେ ଆଇନରେ ନ ଥିଲା । ଅଳ୍ପ ଲୋକଙ୍କୁ ଭୋଟ କ୍ଷମତା ଦିଆ ଯାଇଥିଲା । ଯେଉଁମାନେ ଭୋଟ ପାଇବେ ସେମାନେ ଆସେମ୍ବ୍ଲିକୁ ଯିବେ । ସେହିମାନେ ବହୁତ ଭୋଟରେ ନେତା ବାଛିବେ । ସେହି ନେତା ହେବେ ପ୍ରଧାନମନ୍ତ୍ରୀ । କଂଗ୍ରେସ ତ ଏହି ନୂଆ ଆଇନକୁ ଗ୍ରହଣ କରି ନ ଥାଏ—କାରଣ ଗାନ୍ଧୀ ଗୋଲଟେବୁଲ ବୈଠକରେ ଶେଷ ପର୍ଯ୍ୟନ୍ତ ନ ରହି ଚାଲି ଆସିଥିଲେ । କଂଗ୍ରେସ ସହିତ ଗାନ୍ଧୀଙ୍କ ଜରିଆରେ ପରାମର୍ଶ ନକରି ସରକାର ଯେଉଁ ଆଇନ କରିଛନ୍ତି ତାକୁ କଂଗ୍ରେସ ବା ମାନିବ କାହିଁକି ? ତେଣୁ କଂଗ୍ରେସ ଲୋକେ ଭୋଟରେ ଲଢ଼ିବେନାହିଁ । ଅନ୍ୟମାନେ ଲଢ଼ି ଆସେମ୍ବ୍ଲି ସଭ୍ୟ ହୋଇଯିବେ । ସରକାର ପ୍ରଚାର କରିବେ—କଂଗ୍ରେସ ଭୋଟ ପାଇବ ନାହିଁ ବୋଲି ଲଢ଼ିଲା ନାହିଁ । ସରକାର ଏମିତିକା ଗୋଟାଏ ଭାବ ନେଇଥିଲେ ।

Digitized by srujanika@gmail.com

କଂଗ୍ରେସରେ ମଧ୍ୟ ଗୋଟିଏ ଦଳ କହିଲେ—ଆମେ ଭୋଟରେ ଲଢ଼ିବା ନାହିଁ । ଯେଉଁ ଟିକକ କ୍ଷମତା ଭାରତର ଲୋକଙ୍କୁ ଦିଆଯାଇଛି, ତାହାର ସେଭଳି କୌଣସି ମୂଲ୍ୟ ନାହିଁ । ଆମେ ଯଦି ଯାଇ ମନ୍ତ୍ରୀ ହେବା ଏହି ଆଇନର କଟକଣା ଆମକୁ ତ କିଛି ଭଲ କାମ କରାଇ ଦେବ ନାହିଁ । ଅସଲ କ୍ଷମତା ରହିଛି ଲାଟଙ୍କ ହାତରେ । ଲୋକେ କହିବେ—କଂଗ୍ରେସ ଲୋକେ ଶାସନ କ୍ଷମତା ପାଇଲେ, ଲୋକଙ୍କର କିଛି କରି ପାରିଲେ ନାହିଁ ! ଅନ୍ୟ ଦଳଟି କହିଲେ— ନାଁ, ଆମେ ଭୋଟରେ ଲଢ଼ିବା । ଆସେମ୍ବ୍ଲିକୁ ଯାଇ ମନ୍ତ୍ରୀ ହେବା । ଲୋକଙ୍କର ମଙ୍ଗଳ ପାଇଁ କାମ କରିବା । ଆଇନରେ ଯେତିକ କ୍ଷମତା ଆମକୁ ଦିଆଯାଇଛି ତାହାରି ଭିତରେ ଯାହା ସମ୍ଭବ ସବୁ କରି ସାରିବା । ତାହାପରେ ଲୋକଙ୍କୁ କହିବା—ଦେଖ, ଆହୁରି ଅଧିକ କ୍ଷମତା ନ ପାଇଲେ ଆମେ ତୁମର ଅସଲ ମଙ୍ଗଳ ପାଇଁ କିଛି କରିପାରୁ ନାହୁଁ । ସେଭଳି ପାଇବା ପାଇଁ ଦାବୀ କର । ସେହି ଦାବୀ ପୂରଣ ନ ହେଲେ ଆମେ ଇସ୍ତଫା ଦେଇଦେବା । ପୁଣି ଭୋଟ ହେବ । ସେତେବେଳେ ଆମର ଦାବୀ ଉପରେ ହିଁ ଲୋକମତ ନିଆଯାଉଛି ବୋଲି କହିବା । ଆମେ ଜିଣିଲା ପରେ ବିଲାତ ସରକାରଙ୍କୁ କହିବା—ଅଧିକ କ୍ଷମତା ଦେବାକୁ ପଡ଼ିବ । ନ ଦେଲେ ପୁଣି ଆନ୍ଦୋଳନ ହେବ । ଏଇଟା ହେବ "ଭିତରେ ଲଢ଼ାଇ" । ଭିତରେ ବାହାରେ ଉଭୟ ଜାଗାରେ ଲଢ଼ାଇ ଚାଲିଲେ ସରକାର ବୁଝିପିବେ ଆମେ ଭାରତବାସୀ କଅଣ ଚାହୁଁଛୁ । ସେହିମାନଙ୍କ କଥା ରହିଲା । କଂଗ୍ରେସ ଲୋକେ ଭୋଟରେ ଜିତିଲେ । ଭାରତର ବହୁ ପ୍ରଦେଶରେ କଂଗ୍ରେସ ଗଢ଼ିଲା ମନ୍ତ୍ରିମଣ୍ଡଳ । ଲୋକଙ୍କ ଭିତରେ ନୂଆ ଉତ୍ସାହ ଖେଳିଲା । କ୍ରମେ କ୍ରମେ ଅଧିକରୁ ଅଧିକ କ୍ଷମତା ବିଲାତ ସରକାର ହାତରୁ ଛାଡ଼ିବାକୁ ବାଧ୍ୟ ହେଲେ—ଏଇଭଳି ହୋଇଗଲା ଧାରଣା ।

ଗାନ୍ଧୀଜୀ ତ ମନ୍ତ୍ରୀ ହୋଇ ନଥାନ୍ତି । ସେ ଦେଶର ଚାରିଆଡ଼େ ବୁଲିଲେ, ଲୋକଙ୍କୁ ବୁଝେଇଲେ, ସ୍ୱରାଜ୍ୟ ହାସଲ ପାଇଁ କଅଣ ସବୁ କରିବାକୁ ହେବ । ସେହିକାମ କରୁଥିବାବେଳେ ସେ ୧୯୩୮ ମାର୍ଚ୍ଚ ମାସରେ ଥରେ ଆମେ ଓଡ଼ିଶାରେ ରହିଥିଲେ ଡେଲାଙ୍ଗ ବେରବୋଇରେ । ପୁରୀଠାରୁ ଏହି ସ୍ଥାନଟି ଅଳ୍ପ ଦୂର । ଭାରତର ଚାରିଆଡ଼ୁ ଆଠଶହ ପର୍ଯ୍ୟନ୍ତ ନେତା କର୍ମୀ ସାତଦିନ କାଳ ଏକାଠି ରହି ଦେଶର ମଙ୍ଗଳ ପାଇଁ

Digitized by srujanika@gmail.com

କଅଣ କରାଯାଇପାରେ ସେହି ବିଷୟରେ ଆଲୋଚନା କଲେ । ଗାନ୍ଧୀଙ୍କୁ ସେତେବେଳକୁ ବୟସ ହେଲାଣି ଅଣସ୍ତରି । କିନ୍ତୁ ସେ ଆଗାମୀ ସ୍ୱରାଜ୍ୟ ଲଢ଼ାଇ ବିଷୟରେ ଯେମିତିକା କଥାବାର୍ତ୍ତା କରୁଥାଆନ୍ତି ସେଥିରୁ ମନେ ହେଉଥାଏ ତାଙ୍କ ମନଟାକୁ ସତେ ଯେପରିକି ମାତ୍ର ତିରିଶ ବର୍ଷ ହୋଇଛି ---ଯଦିଓ ଦେହକୁ ହେଲାଣି ଅଣସ୍ତରି ବୟସ ।

## ପଶ୍ଚିମ ଆକାଶରେ କଳା ବଉଦ :

ଭାରତରେ ଏଇଭଳି ନୂଆ ପରୀକ୍ଷା ଚାଲିଥିଲାବେଳେ ପଶ୍ଚିମ ଆକାଶରେ ଗୋଟାଏ କଳା ବଉଦ ବାହାରି ପଡ଼ିଲାଣି । ଇଉରୋପରେ ଯୁଦ୍ଧ ଲାଗିଯିବ—ଏଇ ଅନୁମାନ ସମସ୍ତେ କଲେଣି । ସେହି ମହାଦେଶରେ ଚାରିଟା ବଡ଼ ଦେଶଙ୍କ ଭିତରେ ବହୁ ଆଗରୁ ବିବାଦ । ସେଭଳି ହେବାର ମୂଳ କାରଣ ହେଲା—ପୃଥିବୀ ବଜାରକୁ କିଏ ବେଶୀ ଅକ୍ତିଆରରେ ରଖିବ । ଇଂରେଜ ଜାତି, ଫରାସୀ ଜାତି ପହିଲେ ପହିଲେ ପୃଥିବୀର ସବୁ ଅଂଶକୁ ଖେଦିଯାଇ ବଜାରଗୁଡ଼ିକୁ ଦଖଲ କରିଗଲେ । ବହୁ ସଂଖ୍ୟକ ଦେଶକୁ ନିଜ ଅଧୀନରେ ରଖିଦେଲେ । ଜର୍ମାନ ଜାତି ଟିକିଏ ପଛରେ ପଡ଼ିଗଲା । ଏଣେ କିନ୍ତୁ କଳ କାରଖାନା ତିଆରି କରି ଭଲ କାରିଗର ବିଜ୍ଞାନୀଙ୍କ ସାହାଯ୍ୟରେ ଜର୍ମାନ ଲୋକେ ଭଲ ଭଲ ଜିନିଷ ସବୁ ତିଆରି କଲେଣି । ସେ ସବୁକୁ ବିକ୍ରି କରିବା ପାଇଁ ବଜାର ଦରକାର । ଏଇଥିରୁ ଗୋଟାଏ ପକ୍ଷରେ ଜର୍ମାନୀ ଅନ୍ୟ ପକ୍ଷରେ ଇଂରେଜ ଫରାସୀଙ୍କ ଭିତରେ



ବିବାଦ । ଏହି ବିବାଦରେ ଇଉରୋପର ଅନ୍ୟ ବହୁ ଛୋଟ ବଡ଼ ଦେଶ ଏ ପାଖ ବା ସେପାଖକୁ ହୁଏତ ଆଉଜି ଯାଆନ୍ତି । ଏହି ସବୁ କାରଣରୁ ଇଉରୋପରେ ଗୋଟାଏ ବଡ଼ ଧରଣର ଯୁଦ୍ଧହୋଇ ଯାଇ ୧୯୧୯ରେ ଶେଷ ହୋଇଥିଲା । ବହୁ ବଡ଼ ଦେଶ, ଇଉରୋପ ବାହାରର କେତେକ ଦେଶ ଏହି ଲଢ଼ାଇରେ ଭାଗ ନେଇଥିବାରୁ ଏହାକୁ

Digitized by srujanika@gmail.com

"ବିଶ୍ୱଯୁଦ୍ଧ" ବା "ପୃଥିବୀ ଯୁଦ୍ଧ" ବୋଲି କୁହାଗଲା । ସେଥିରେ ଜର୍ମାନୀ ହାରିଗଲା—ତଳିତଳାନ୍ତ ହୋଇଗଲା । ତାହାର କଳକାରଖାନା ସବୁ ଭାଙ୍ଗିରୁଜି ଗଲା । କେତେ ଲକ୍ଷ ଗଜା ଗଜା ଜର୍ମାନ ଯୁବକ ମରିଗଲେ । ଯୁଦ୍ଧ ଶେଷରେ ଇଂରେଜ ଫରାସୀମାନେ କହିଲେ, ଆମର ଯେଉଁ ଖର୍ଚ୍ଚ ଏହି ଯୁଦ୍ଧରେ ହୋଇଛି ସେ ବାବଦକୁ ତୁମ ଦେଶ ଆମକୁ ପ୍ରତିବର୍ଷ ଏତିକି ଲେଖାଁ ଟଙ୍କା ଦେବାକୁ ବାଧ୍ୟ । ଭବିଷ୍ୟତରେ ଆଉଥରେ ତୁମେ ଯେମିତି ଯୁଦ୍ଧ କରି ନ ପାରିବ ତାହାର ବ୍ୟବସ୍ଥା କରୁଛୁ । ଏଣି ଏଇ ଅସ୍ତ୍ରଶସ୍ତ୍ର ତୁମେ ତିଆରି କରି ପାରିବ ନାହିଁ । ଏତିକି ସଂଖ୍ୟାରୁ ଅଧିକ ସୈନ୍ୟ ରଖି ପାରିବ ନାହିଁ । ହାରି ଯାଇଥିବାରୁ ବିଚରା ଜର୍ମାନ ଜାତି ଏହିସବୁ ସର୍ତ୍ତ ମାନି ନେଲା । ପୃଥିବୀର କେତେଜଣ ପ୍ରସିଦ୍ଧ ଲୋକ ସେତେବେଳେ କହିଥିଲେ —ଏଭଳି କଡ଼ା ଓ ଅପମାନିଆ ସର୍ତ୍ତ ଗୋଟାଏ ବୀରଜାତି ଉପରେ ଲଦି ଦେବାଟା ଠିକ୍ ହେଉନାହିଁ । ସେମାନେ ଆଜି ହୁଏତ ମୁଣ୍ଡପାତି ମାନି ଯିବେ—କିନ୍ତୁ ଅପମାନଟା ଭିତରେ ଭିତରେ କାମ କରିବ । ସେମାନେ ଦିନେ ଏହାର ପ୍ରତିଶୋଧ ନେବା ପାଇଁ ଏବଠାରୁ ଚିନ୍ତା କରିବେ ।

ସେହିମାନଙ୍କ କଥା ଠିକ୍ ବୋଲି ଜଣାପଡ଼ିଲା । ଜର୍ମାନ ଭୂଇଁରେ ହିଟ୍ଲର ବୋଲି ଜଣେ ବାହାରି ପଡ଼ିଲେ । ସେ ଜର୍ମାନ ଜାତିକୁ ତତାଇବାରେ ଲାଗିଲେ । "ଆମେ ବଡ଼ ଜାତି — ଆମେ ଦୁନିଆରେ ବଡ଼ ହେବୁ"— ଏହିକଥାକୁ ସେ ଦୋହରାଇ ଦୋହରାଇ କହିଲେ । ତାଙ୍କ ପଛରେ ଲକ୍ଷ ଲକ୍ଷ ଯୁବକ ଠିଆ ହୋଇଗଲେ । ୧୯୩୩ରେ ସେ ହୋଇଗଲେ ଜର୍ମାନୀ ଦେଶର ଶାସକ । ଇଂରେଜ ଫରାସୀ ଲୋକେ ଯେଉଁସବୁ ଅପମାନିଆ ସର୍ତ୍ତ ତାଙ୍କ ଦେଶ ଉପରେ ଲଦି ଦେଇଥିଲେ ସେସବୁକୁ ସେ ଗୋଡ଼ରେ ଫିଙ୍ଗିଦେଲେ । ଅସ୍ତ୍ରଶସ୍ତ୍ର ତିଆରି କରି ଲକ୍ଷ ଲକ୍ଷ ଯୁବକଙ୍କ ହାତରେ ଧରାଇଦେଲେ—ସେମାନଙ୍କୁ ସୈନ୍ୟବାହିନୀରେ ସାମିଲ କରି । ସମସ୍ତ ପୃଥିବୀରେ ଚହଳ ପଡ଼ିଗଲା । ୧୯୩୮ ବେଳକୁ ଜଣା- ପଡ଼ିଗଲାଣି—ଆଉ ଗୋଟିଏ ବିଶ୍ୱଯୁଦ୍ଧ ହେବ । ସତକୁ ସତ ୧୯୩୯ ସେପ୍ଟେମ୍ବର ୩ ତାରିଖ ଦିନ ଇଂଲଣ୍ଡ ଜର୍ମାନୀ ଭିତରେ ଯୁଦ୍ଧ ଆରମ୍ଭ ହୋଇଗଲା ।

Digitized by srujanika@gmail.com

## ଆମକୁ ଟିକେ ସାହାଯ୍ୟ କର !

ସମସ୍ତେ ଭାବିଥିଲେ ବିଲାତ ସରକାର ଭାଇସରୟଙ୍କୁ କହିବେ ଯୁଦ୍ଧରେ ଭାରତ ଯୋଗଦେବା ସମ୍ପର୍କରେ ଭାରତର ନେତାମାନଙ୍କ ସହିତ ପରାମର୍ଶ କରିବାପାଇଁ । ଭାରତୀୟମାନଙ୍କ ମତକୁ ଅପେକ୍ଷା କରନ୍ତୁ ବା ନ କରନ୍ତୁ ଅନ୍ତତଃ ଉପରକୁ ଦେଖାଇବା ପାଇଁ ତ ମତ ଲୋଡ଼ିବେ । ଦିଲ୍ଲୀରେ ଗୋଟିଏ କେନ୍ଦ୍ର ବିଧାନସଭା ଅଛି—ଭିନ୍ନ ଭିନ୍ନ ପ୍ରଦେଶରେ ମନ୍ତ୍ରିମଣ୍ଡଳ ସବୁ ରହିଛି । କିନ୍ତୁ କାହାକୁ କିଛି ନ ପଚାରି ବଡ଼ଲାଟ କହିଦେଲେ ଜର୍ମାନୀ ବିରୁଦ୍ଧରେ ଭାରତ ଯୁଦ୍ଧ ଘୋଷଣା କଲା । ଏ ଦେଶର ଜର୍ମାନୀ ସହିତ କୌଣସି ପ୍ରକାରର ବିବାଦ ନ ଥିଲାବେଳେ ଭାରତର ସୈନ୍ୟ ମାନେ କାହିଁକି ଯୁଦ୍ଧ କ୍ଷେତ୍ରରେ ବଳି ପଡ଼ିବେ—ଏଇଥିଲା ମୂଳ ପ୍ରଶ୍ନ । ଭାରତୀୟମାନେ ଅପମାନିତ ହେଲେ ବୋଲି ଧରିନେଲେ । ତେଣେ ଦେଶକୁ ନେଇ ଯୁଦ୍ଧରେ ପୂରାଇ ସାରିଲା ପରେ ବଡ଼ଲାଟ ଗାନ୍ଧୀଙ୍କୁ ଡକାଇଲେ ପରାମର୍ଶ କରିବା ପାଇଁ । ମହାତ୍ମାଜୀ କହିଲେ—ଆମେ ତ ପରାଧୀନ । ଦୁଇ ସମସ୍କନ୍ଧ ଲୋକଙ୍କ ଭିତରେ ସିନା ଏଭଳି ସବୁ ବିଷୟରେ କଥାବାର୍ତ୍ତା ଚାଲେ । ମୁଁ ବା କଅଣ କହିବି ? ବଡ଼ଲାଟ ସେହି ପୁରୁଣା କଥା କହିଲେ —ଯୁଦ୍ଧ ଶେଷ ହୋଇଗଲା ପରେ ଭାରତ ଲୋକଙ୍କ କଥା ଶୁଣାଯିବ । ଗାନ୍ଧୀଙ୍କର ଉତ୍ତର ହେଲା—ଗଲା ଯୁଦ୍ଧବେଳେ ଏମିତିକା କଥା କହିଥିଲ । ସରକାରଙ୍କ କଥାରେ ବିଶ୍ୱାସ କରି ମୋ ଭଳି ଲୋକ ପୁଣି ସେତେବେଳେ ତୁମ ପାଇଁ ଦେଶରୁ ସୈନ୍ୟ ସଂଗ୍ରହ କରିଥିଲା । କିନ୍ତୁ ଯେମିତି ଯୁଦ୍ଧ ସରିଛି ସବୁକଥା ଭୁଲିଗଲ । ଜାଲିୟାନାୱାଲାବାଗରେ ରକ୍ତ ସୁଅ ଛୁଟାଇଲ ନିରୀହ ଭାରତବାସୀଙ୍କୁ ଗୁଳିକରି । ଆହୁରି କେତେ କଅଣ କଲ । ତେଣୁ ଆଜି ଯଦି ସ୍ପଷ୍ଟ ଭାଷାରେ କହିଦେବ ଯେ ଯୁଦ୍ଧ ଶେଷ ହେଲେ ଭାରତକୁ ସ୍ୱାଧୀନତା ମିଳିବ ଆମେ ଧୈର୍ଯ୍ୟ ଧରି ରହିବୁ । ସ୍ୱାଧୀନ ଦେଶର ଲୋକଙ୍କ ସହିତ ଯେମିତି କାରବାର କରନ୍ତି ଆଜିଠାରୁ ସେମିତି କରିବା ଆରମ୍ଭ କରିବ । ଲୋକେ ଦେଖିପାରିବେ ଯେ ତୁମେ ଯାହା କହୁଛ ତାକୁ କାମରେ କରିବା ପାଇଁ ମନଟାକୁ ତିଆରି କରି ସାରିଲଣି । ବଡ଼ଲାଟ କିନ୍ତୁ କୌଣସି କଥା ସଫା ସଫା ନକହି ଏଣୁ ତେଣୁ ବୁଲାଇ ବୁଲାଇ କହିଲେ । କଂଗ୍ରେସ ଓ ଗାନ୍ଧୀ ଭଲ ଭାବରେ ବୁଝିଗଲେ ଯେ ବିଲାତି ସରକାରଙ୍କ ମତଲବ ଭଲ ନୁହେଁ । ଭାରତରୁ ସୈନ୍ୟ ଗଲେ ଇଉରୋପରେ ଅନ୍ୟ ରଣକ୍ଷେତ୍ରରେ

Digitized by srujanika@gmail.com

ଜର୍ମାନୀ ଇଟାଲୀ ବିରୁଦ୍ଧରେ ଲଢ଼ିବା ପାଇଁ । ଯେଉଁଥିରେ ଆମର ଟିକିଏ ହେଲେ ସ୍ୱାର୍ଥ ନାହିଁ । ସେମିତିଆ କାମ ପାଇଁ ଆମ ଦେଶର ଯୁବକମାନେ ପ୍ରାଣ ଦେବେ—ଏହାଠାରୁ ବଳି ଅନ୍ୟାୟ କଥା ଆଉ କଅଣ ବା ହୋଇ ପାରେ ? ଦେଶରୁ ଏତେ ଟଙ୍କା ପଇସା ଧନ ଦଉଲତ ଗୁଡ଼ାକ ଗହମ ଯୁଦ୍ଧ କ୍ଷେତ୍ରକୁ, ବିଦେଶକୁ ଗ୍ଲଲା ଯେ ଏ ଦେଶର ଲୋକେ ଦେଖୁ ଦେଖୁ ଦରିଦ୍ର ହୋଇ ଯାଉଥାଆନ୍ତି ।

ଶେଷକୁ କଂଗ୍ରେସ ଆଉ ସ୍ଥିର ହୋଇ ରହି ପାରିଲା ନାହିଁ । ଏଭଳି ଅନ୍ୟାୟର ଜବାବ ଦେବାକୁ ପଡ଼ିବ । ଯୁଦ୍ଧରେ କେହି ସାହାଯ୍ୟ କର ନାହିଁ ବୋଲି ଲୋକଙ୍କୁ କହିବାକୁ ପଡ଼ିବ । ଏଣେ ଭିନ୍ନ ଭିନ୍ନ ପ୍ରଦେଶରେ କଂଗ୍ରେସ ଲୋକେ ମନ୍ତ୍ରୀ ଥାଇ ଏଭଳି କଥା କହିବେ ବା କେମିତି ? ତେଣୁ ୧୯୩୯ ନଭେମ୍ବର ୪ ତାରିଖ ଦିନ କଂଗ୍ରେସ ମନ୍ତ୍ରୀମାନେ ଇସ୍ତଫା ଦେଇ-ଦେଲେ । କଂଗ୍ରେସ କର୍ମୀମାନଙ୍କୁ କୁହାଗଲା—ଗାଁକୁ ଗାଁ ଯାଇ ପ୍ରଚାର କର, ଲୋକଙ୍କୁ ବୁଝାଅ ବିଲାତ ସରକାର ଏ ଦେଶ ପ୍ରତି କିଭଳି ଅନ୍ୟାୟ ବ୍ୟବହାର କରୁଛି ।

## ସରକାର ପୁଣି ଚମକି ଉଠିଲେ !

ଏଭଳି ଗୋଟିଏ ଘଟଣା ଘଟିଗଲା ଯେ କେବଳ ବଡ଼ଲାଟ କାହିଁକି —ବିଲାତ ସରକାର ମଧ୍ୟ ଚମକି ଉଠିଲେ । ଓଡ଼ିଶା ଭୂଇଁରେ ଯେଉଁ ସୁଭାଷଚନ୍ଦ୍ର ବୋଷ ଜନମ ହୋଇଥିଲେ, ଓଡ଼ିଶାର ପାଣି ପବନରେ କେତେ ବର୍ଷ ପର୍ଯ୍ୟନ୍ତ ବଢ଼ିଥିଲେ, ସେ ଦିନେ ଦେଶର ଜଣେ ବଡ଼ ନେତା ହୋଇ-ଗଲେ । ଥରେ କଂଗ୍ରେସ ସଭାପତି ଆସନରେ ଶୋଭା ପାଇଥିଲେ । ଯୁଦ୍ଧ ଲାଗି ଗଲା, ଏତିକିବେଳେ ସରକାର ଉପରେ ପ୍ରଚଣ୍ଡ ଆକ୍ରମଣ ଚଳାଇ ଦେବାକୁ ହେବ—ଏଇଆ ଥାଏ ତାଙ୍କର ମତ । ସେ କହୁଥାଆନ୍ତି ଏଇ ଇଂରେଜ ଜାତି ଅହିଂସା ନୀତିର ମହତ୍ତ୍ୱ କିଛି ବୁଝେ ନାହିଁ । ଇଏ ବୁଝନ୍ତି ତୋପ ବନ୍ଧୁକର ଭାଷା । ତେଣେ ଜର୍ମାନୀ ମାଡ଼ ଚଢ଼ାଉ ଥିଲାବେଳେ ଆମେ ଏପଟୁ ମାଡ଼ ଚଢ଼ାଇଲେ ସରକାର ଜବତ ହୋଇଯିବ । ତାଙ୍କର ଏହିମତ ଜାଣିପାରି ସରକାର ତାଙ୍କୁ ଗୋଟାଏ କୌଶଳରେ ଅଟକାଇ ଦେବାପାଇଁ ଇଚ୍ଛା କଲେ । ଜେଲ ଭିତରକୁ ନନେଇ ତାଙ୍କ ଘର ଚାରିପଟେ ସାଧା ପୋଷାକ ପୁଲିସ ଜଗାଇ ଦେଇ କହିଲେ ତୁମକୁ ନଜରବନ୍ଦୀ କରି ରଖାଗଲା । ଏହି ଘର ବାହାରକୁ ଯାଇପାରିବ ନାହିଁ । ଗଲେ ସିନା ଲୋକଙ୍କୁ ମତାଇବ

Digitized by srujanika@gmail.com

—ଘରେ ଅଟକ ରହିଲେ ଆଉ ସେ କଥା କରିପାରିବ ନାହିଁ । କଡ଼ା ପୁଲିସ ଜଗୁଆଳଙ୍କ ଭିତରେ ଏହିଭଳି ଏକରକମ ବନ୍ଦୀ ହୋଇ ରହିବାଟା ତାଙ୍କୁ କଅଣ ଭଲ ଲାଗନ୍ତା ? ସେ ଭାରତରୁ ଖସି ପଳାଇ ଜର୍ମାନୀ ଚାଲିଯିବା ପାଇଁ ଉପାୟ ଚାହିଁଲେ । ବେମାର ଅଛନ୍ତି ବୋଲି ଛଳନା କଲେ । ଡାକ୍ତରମାନେ ଆସନ୍ତି ଦେଖିବା ପାଇଁ । ଜଗୁଆଳ ପୁଲିସ କ୍ରମେ ଟିକିଏ ଅଣହୁସିଆର ହୋଇଗଲେ । ଘରୁ ପଳାଇବେ ସିନା ଭାରତ ବାହାରକୁ ଯିବେ କେମିତି ? ଯୁଦ୍ଧବେଳେ ବ୍ରିଟିଶ ସରକାର ଭାରତ ସୀମାରେ ଏମିତିକା ଜାଲ ବିଛାଇଥାଏ ଯେ ସେଥିରୁ ବାହାରି ପଳାଇବା କିଛି କମ୍ ସାହାସର କଥା ନୁହେଁ । ଚାଲିଗଲ ତ ଗଲ—ଯଦି ପଳାଇ ଯାଉ ଯାଉ ଧରାପଡ଼ିଗଲ ଫାଶୀକାଠରେ ଝୁଲାଇ ଦିଆଯିବ । ନଚେତ ଗୁଳିରେ ମୁଣ୍ଡଟା ଉଡ଼ିଯିବ । ଦିନେ ହଠାତ୍ ଶୁଣାଗଲା ଯେ ସୁଭାଷ ତାଙ୍କ ଘରେ ନାହାନ୍ତି । ସରକାର ଚମକି ପଡ଼ିଲେ । ସେତେବେଳକୁ ସେ ଯାଇ ଜର୍ମାନୀରେ ହାଜର ହୋଇଗଲେଣି । ଜର୍ମାନୀ ଭୂଇଁରୁ ଭାରତକୁ ମୁକ୍ତ କରିବା ପାଇଁ ସେ ଲଢ଼ାଇ ଆରମ୍ଭ କରିଦେବେ—ଯେତେ ପାରନ୍ତି ସେତେ ଭାରତୀୟଙ୍କୁ ଏକାଠି କରି । ଜର୍ମାନୀ ଯୋଗାଇ ଦେବ ଅସ୍ତ୍ରଶସ୍ତ୍ର । ସରକାରଙ୍କ ମୁଣ୍ଡ-ବଥା ବଢ଼ିଗଲା ସେତେବେଳେ ପରେ ଜଣାପଡ଼ିଲା ଯେ ଗୋଟାଏ ବୁଡ଼ାଜାହାଜରେ ସେ ଜାପାନ ପଳାଇ ଯାଇଛନ୍ତି । ସେତେବେଳକୁ ଜାପାନ ଇଂରେଜଙ୍କ ବିରୁଦ୍ଧରେ ଯୋଗ ଦେଇ ସାରିଲାଣି ଯୁଦ୍ଧରେ ।

## ପହିଲେ ମନକୁ ତିଆରି କର :

ଭାରତରେ ଶେଷ ସ୍ୱାଧୀନତା ସଂଗ୍ରାମ ପାଇଁ ଲୋକଙ୍କ ମନକୁ କିଭଳି ତିଆରି କରାଯିବ ସେହି ବିଷୟରେ ଗାନ୍ଧିଜୀ ଚିନ୍ତିତ ଥାଆନ୍ତି । ଯାହାକୁ କୁହନ୍ତି ଔଷଧର ପରୀକ୍ଷା କରି ଦେଖିବାକୁ ହେବ କେମିତି କାମ କରୁଛି—ସେମିତିକା କାମଟିଏ ସେ କଲେ । କହିଲେ "ପହିଲେ ଆରମ୍ଭ ହେବ ବ୍ୟକ୍ତିଗତ ଲଢ଼ାଇ" । ଅଳ୍ପ କେତେ ଜଣଙ୍କୁ ବଛାଯିବ । ସେମାନେ ଗୋଟାଏ ଗୋଟାଏ ସ୍ଥାନରେ ସଭାକରି ଭାଷଣ ଦେବେ । ଦେଶ ଆସି କିଭଳି ଗୋଟାଏ ବିପଦ ଛକରେ ପହଞ୍ଚିଗଲାଣି ସେକଥା ଲୋକଙ୍କୁ ଭଲ ଭାବରେ ବୁଝାଇ ଦେବେ । ଭାଷଣ ଶେଷରେ କହିବେ—"ଧନଜନ ଦେଇ

Digitized by srujanika@gmail.com

ଯୁଦ୍ଧକୁ ସାହାଯ୍ୟ କର ନାହିଁ” । ଏଇଆକୁ ନାମ ଦିଆଗଲା “ବାଣୀ ସତ୍ୟାଗ୍ରହ ।”

ବାପୁଜୀ ତ କହିଦେଇ ଥାଆନ୍ତି—କିଏ କିଏ ବାଣୀ ସତ୍ୟାଗ୍ରହ କରିବେ ସେମାନଙ୍କ ନାମ ସିଏ ନିଜେ ସ୍ଥିର କରିଦେବେ । କିଏ ପ୍ରଥମେ ଏଭଳି କରିବେ ଏଇ କଥା ଜାଣିବା ପାଇଁ ସମସ୍ତେ ଅପେକ୍ଷା କରି ରହି ଥାଆନ୍ତି । ଦିନେ ଶୁଣାଗଲା ବିନୋବା ଭାବେ ବୋଲି ଜଣେ ଟାଣୁଆ ସଚ୍ଚୋଟ ପାଠୁଆ ଲୋକଙ୍କୁ ସେ ବାଛିଲେଣି ପ୍ରଥମ ବାଣୀ ସତ୍ୟାଗ୍ରହୀ ଭାବରେ । ଏହି ନାମଟି ଦେଶବାସୀଙ୍କ ପାଖରେ ସେଭଳି କିଛି ଜଣାଶୁଣା ନଥିଲା । ଯେତେବେଳେ ତାଙ୍କ ବିଷୟରେ ସବୁକଥା ଜଣାପଡ଼ିଗଲା ସମସ୍ତେ ଟିକିଏ ବିସ୍ମିତ ହେଲେ । ସେହି ବିନୋବା ଦିନେ ପ୍ରସିଦ୍ଧ ଭୂଦାନ ନେତା ଓ ଜ୍ଞାନୀ ଭାବରେ ଦେଶରେ ପରିଚିତ ହୋଇଥିଲେ । ୧୯୪୦ ଅକ୍ଟୋବର ୧୭ ତାରିଖରେ ସେ ଭାଷଣ ଦେଇ ଯୁଦ୍ଧରେ ସାହାଯ୍ୟ ବିରୁଦ୍ଧରେ ଡାକରା ଦେଲେ । ତାଙ୍କୁ ସଙ୍ଗେ ସଙ୍ଗେ ଗିରଫ ନ କରି ସରକାର ତିନଦିନ ଅପେକ୍ଷା କଲେ । ୨୦ ତାରିଖରେ ତାଙ୍କୁ ଗିରଫ କରାଗଲା । ତାହାପରେ ଦେଶର ଚାରିଆଡ଼େ ବହୁ ବଡ଼ ବଡ଼ ନେତା, ପ୍ରସିଦ୍ଧ କର୍ମୀ ଏହିଭଳି କହି ଜେଲ୍ ବରଣ କରିଥିଲେ । ଯେଉଁମାନେ ମନ୍ତ୍ରୀ ହୋଇଥିଲେ ସେମାନଙ୍କ ଭିତରୁ ଅନେକେ ସତ୍ୟାଗ୍ରହ କରି ବନ୍ଦୀ ହେବାରୁ ପୃଥିବୀର ଲୋକେ ଜାଣିଗଲେ—ଭାରତବାସୀଙ୍କ ଇଚ୍ଛା ବିରୁଦ୍ଧରେ ବିଲାତ ସରକାର ଭାରତକୁ ନେଇ ଯୁଦ୍ଧରେ ପୂରାଇ ଦେଇଛି ।

## “ଭାରତ ଛାଡ଼”—ଭାରତ ଛାଡ଼” :

ଗାନ୍ଧୀ ତିନୋଟି କଥା ପାଇଁ ଅପେକ୍ଷା କରିଥିଲେ । ପ୍ରଥମଟି ହେଲା —ଆମ ଦେଶ ଲୋକେ ଜାଣି ଯିବେ ଯୁଦ୍ଧରେ ଜବରଦସ୍ତ ନେଇ ଆମକୁ ସାମିଲ କରିଦେବା ଫଳରେ ଆମର କିଭଳି କ୍ଷତି ହେଉଛି । ଦ୍ୱିତୀୟରେ —ସମସ୍ତେ ବୁଝିଯିବେ ଏବେ ଯଦି ସ୍ୱାଧୀନତା ପାଇଁ ଶେଷ ସଂଗ୍ରାମ କରା ନ ଯାଏ ଯୁଦ୍ଧ ଶେଷ ହେଲାପରେ ଆଉ ଥରେ ଲୋକଙ୍କୁ “ନିଦରୁ ଉଠାଇ ହେବ ନାହିଁ” । ତୃତୀୟରେ—ପୃଥିବୀର ଜନମତ କହିବ ଭାରତ ଲୋକେ ସ୍ୱାଧୀନତା ପାଇବା ପାଇଁ ହକ୍‌ଦାର । ଯୁଦ୍ଧପରେ ଇଂରେଜମାନେ ସେମାନଙ୍କୁ ଆଉ ପଚାରିବେ ନାହିଁ । ତିନୋଟିଯାକ କଥା ଜଣା ଅଧିକେ

Digitized by srujanika@gmail.com

ହୋଇଗଲା । "ବଚନ ବରୋଧ" ବା "ବାଣୀ ସତ୍ୟାଗ୍ରହରେ" ହଜାର ହଜାର ଲୋକେ ଯୋଗଦେଇ ବନ୍ଦୀ ହେବାରୁ ଦେଶ ଭିତରେ ଗୋଟାଏ ନୂଆ ଜାଗରଣ ଦେଖାଦେଲା । ଭାରତର ସବୁଶ୍ରେଣୀର ଶିକ୍ଷିତ ଲୋକେ ବୁଝିଗଲେ ଯେ ଏହି ବେଳଟାକୁ ଛାଡ଼ିଦେଲେ ଆଉ ସହଜରେ ଲୋକଙ୍କୁ ମତାଇ ହେବ ନାହିଁ । ଚୀନର ସବୁଠାରୁ ବଡ଼ ନେତା ଓ ଶାସନର ସବୁଠାରୁ ଉଚ୍ଚ ଗାଦିରେ ବସିଥିବା ଜେନେରାଲ ଚିଆଙ୍ଗ୍ କାଇସାକ ନିଜେ ଭାରତ ଆସି ଗାନ୍ଧୀଙ୍କ ସହିତ ଦେଖାକଲେ । ସବୁକଥା ଶୁଣିଲାପରେ ବିଲାତ ସରକାରଙ୍କୁ କହିଲେ—"ଗାନ୍ଧୀଙ୍କ କଥାର ମୂଲ୍ୟ ଅଛି" । ଆମେରିକାର ପ୍ରେସିଡେଣ୍ଟ ରୁଜଭେଲ୍ଟ୍ ମଧ୍ୟ ଚର୍ଚ୍ଚିଲଙ୍କୁ ବୁଝାଇ କହିଲେ—ଯୁଦ୍ଧପରେ ଭାରତକୁ ସ୍ୱାଧୀନତା ଦିଆଯିବ ବୋଲି କହିଲେ ଭଲ ହୁଅନ୍ତା" । ଏ ଦୁଇଜଣଙ୍କ କଥା ରହିଲା ନାହିଁ ।

ଠିକ୍‌ବେଳ ଆସିଛି ଜାଣି ଗାନ୍ଧିଜୀ ମାତ୍ର ଦୁଇଟି ଶବ୍ଦ କହିଦେଲେ । ସେହି ଦୁଇଟି ହେଲା—"ଭାରତ ଛାଡ଼" । ହରିଜନ ପତ୍ରିକାରେ ଏହି ଶିରୋନାମାରେ ଯେତେବେଳେ ଗାନ୍ଧୀଙ୍କ ଲେଖା ବାହାରିଗଲା ଭାରତ-ବାସୀଙ୍କ ଲୋମ ଟାଙ୍କୁରି ଉଠିଲା । "ତୁମେ ଇଂରେଜମାନେ ଏ ଦେଶ ଛାଡ଼ି ଚାଲିଯାଅ" ବୋଲି ଏଭଳି ଦମ୍ଭରେ ଯୁଦ୍ଧ ସମୟ ଭିତରେ କେହି କହି ନଥିଲେ । ସମସ୍ତଙ୍କ ମୁହଁରେ ମନ୍ତ୍ରଭଳି ଏହି ଦୁଇଟି ଶବ୍ଦ ଶୁଣାଗଲା । ବିଦେଶର ଲୋକେ କାନ ଡେରି ଭାରତ ଭୂଇଁରୁ ଉଠିଥିବା ଏହି ଧ୍ୱନିକୁ ଶୁଣିଲେ । ସାମାନ୍ୟ ବୋଲି ଜଣା ପଡ଼ୁଥିବା ଏହି ଦୁଇଟି ଶବ୍ଦ ସତେ ଯେପରିକି ଇଂରେଜ ଜାତିର କାନକୁ ବଧିର କରିଦେଲା । ସେମାନେ ଏଭଳି ଭାବରେ ଚମକି ପଡ଼ିଲେ ଯେ କଅଣ କରାଯିବ ହଠାତ୍ ଠିକ୍-କରିପାରିଲେ ନାହିଁ ।

୧୯୪୨ ଅଗଷ୍ଟ ମାସ ସାତ ତାରିଖ, ବୋମ୍ବେଠାରେ କଂଗ୍ରେସ ନେତାମାନେ ଠୁଳ ହୋଇଥାଆନ୍ତି । ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ବସିଥାଏ । ସେଇଠାରେ "ଭାରତ ଛାଡ଼" ପ୍ରସ୍ତାବ ପାଶ୍ ହେଲା ଆଠ ତାରିଖରେ । ବିଦେଶୀ ଶାସକମାନଙ୍କୁ ଭାରତରୁ ବିଦାୟ ଦେବା ପାଇଁ କଅଣ କରାଯିବ ସେ କଥା ସ୍ଥିର କରିବାର ଦାୟିତ୍ୱ ଗାନ୍ଧୀଙ୍କ

Digitized by srujanika@gmail.com



ଉପରେ ଗୁଳି ଚଳାଗଲା । ସେ ଦାୟିତ୍ୱ ସେ ମୁଣ୍ଡାଇଲେ ବୋଲି ଜଣାଇ ଦେଇ କହିଲେ—ସଙ୍ଗେ ସଙ୍ଗେ ନିଜ ନିଜ ଅଞ୍ଚଳକୁ ଫେରି ଯାଅ ; ଶେଷ ସଂଗ୍ରାମରେ ଝାସଦେବା ପାଇଁ ପ୍ରସ୍ତୁତ ହୋଇ ରହିଥାଅ । ଗୋଟିଏ କଥା ନିଜେ ମନେରଖି ଥାଅ ଓ ଦେଶବାସୀଙ୍କୁ କହିଦିଅ ମୁକ୍ତି ସଂଗ୍ରାମ ଆରମ୍ଭ ହୋଇଗଲା ମାତ୍ରେ ପ୍ରତ୍ୟେକ ଲୋକ ନିଜକୁ ସ୍ୱାଧୀନ ଭାରତ ଲୋକ ବୋଲି ବିଚାରିବ । ଲୋକେ ଗୋଟିଏ ଗୋଟିଏ ଅଞ୍ଚଳରେ ପଞ୍ଚାୟତ ଗଢ଼ି ସ୍ୱାଧୀନତା ଘୋଷଣା କରିବେ । ସରକାରଙ୍କୁ କର ଟିକସ ଦେବେ ନାହିଁ । ଲୋକେ ପୋଲିସକୁ ଓ ସୈନ୍ୟଙ୍କୁ ବୁଝାଇ ନିଜ ଆଡ଼କୁ ଟାଣିବେ । ଏମିତିକା କାମ ସବୁ କରାଯିବ ଯେ ସରକାର ଅଚଳ ହୋଇ ପଡ଼ିବ ।

ସେହିଦିନ ରାତି ପାହିଲା ବେଳକୁ ଅର୍ଥାତ୍ ଅଗଷ୍ଟ ୯ ତାରିଖ ଭୋର ହେଉ ହେଉ ଗାନ୍ଧୀଙ୍କୁ ଗିରଫ କରି ନିଆଗଲା । ଦେଶର ଚାରିଆଡ଼େ ଆରମ୍ଭ ହୋଇଗଲା ଧରପଗଡ଼ । ଗାନ୍ଧୀ ତା' ପୂର୍ବରୁ ଲୋକଙ୍କୁ କହି ଯାଇଥିଲେ—"କର ବା ମର" । ପରାଧୀନ ଭାରତରେ ଜୀଇ ରହିବାଠାରୁ ବିଦେଶୀ ଶାସନ ବିରୁଦ୍ଧରେ ଲଢ଼ି ମରିବା ଭଲ ।

## ମରଣକୁ କେହି ନ ଗଲେ ଡରି :

ଯାହାକୁ କହନ୍ତି ସରକାର ହୋଇଗଲା ରକ୍ତମୁଖା । ନ୍ୟାୟ ଅନ୍ୟାୟର ବିଚାର ରହିଲା ନାହିଁ । ଏଣେ ଲୋକେ ମଧ୍ୟ ମରଣ ମୂର୍ଚ୍ଛା ଲଢ଼ାଇ ଚଳାଇଲେ । ହିମାଳୟ ଠାରୁ କୁମାରିକା ଯାଏ ଯେଉଁଠି ଶୁଣିବ ଗିରଫ, ଲାଠି, ଗୁଳିମାଡ଼ । ସ୍ଥାନେ ସ୍ଥାନେ ଉଡ଼ାଜାହାଜରୁ ଗୁଳି ଚାଲିଲା । ବହୁ ଲୋକ ଟଳି ପଡ଼ିଲେ । କେତେକ ସ୍ଥାନରେ ଲୋକେ ସ୍ୱାଧୀନତା ଘୋଷଣା କରିଦେଲେ । ସେ ଅଞ୍ଚଳରେ ସରକାରୀ ଲୋକଙ୍କୁ ପୁରାଇ

Digitized by srujanika@gmail.com

ଦେଲେ ନାହିଁ । ବହୁ ସଂଖ୍ୟକ ପୁଲିସ ଆଣି ସେସବୁ ଅଞ୍ଚଳକୁ ସରକାର "ଆଉଥରେ ଦଖଲ କରିଲେ" । ଏହି ଅଧିକା ଖରଚ ଲୋକଙ୍କଠାରୁ ଆଦାୟ କରିବା ପାଇଁ ପିଟୁଣି ଟିକସ ବସାଇଲେ । ଏହାର ଅର୍ଥ ହେଲା ସେ ଅଞ୍ଚଳର ସମସ୍ତଙ୍କଠାରୁ ଜୋରିମାନା ଅସୁଲ । ସରକାର କେବେ-ହେଲେ ଅନୁମାନ କରି ନ ଥିଲେ ଯେ ଭାରତର ଯେଉଁ ଲୋକଙ୍କ ହାତରେ ହାତ ହତିଆର ନାହିଁ, ସେମାନେ ପୁଣି ଏତେ ସାହସ ଦେଖାଇ ମୁକ୍ତି ସଂଗ୍ରାମ ଚଳାଇବେ ।

ଲୋକେ ଯେଉଁଳି ସାହସ ଦେଖାଇଲେ ତାହାକୁ ଠିକେ ଠିକେ ବର୍ଣ୍ଣନା କଲେବି ଗୋଟାଏ ବଡ଼ ବହି ହୋଇଯିବ । ତାକୁ ସାତ ଦିନ ସାତ ରାତି ପଢ଼ିଲେ ମଧ୍ୟ ଶେଷ ହେବ ନାହିଁ । ସେଥିଭିତରୁ ଓଡ଼ିଶାରେ ଯାହା ହୋଇଥିଲା ତାକୁ ମଧ୍ୟ ସଂକ୍ଷେପରେ ଲେଖିବା ପାଇଁ ଏହି ଛୋଟ ବହିରେ ସ୍ଥାନ ନାହିଁ । ଭାତ ହାଣ୍ଡିରୁ ଗୋଟିଏ ଚିପିଲା ଭଳି କେତୋଟି ଘଟଣା କହିଦେବି ଓଡ଼ିଶାରେ ଓ ଦେଶର ଅନ୍ୟସବୁ ଅଞ୍ଚଳରେ କିଭଳି କଅଣ ହୋଇଥିବ ।

କୋରାପୁଟ ଜିଲ୍ଲାରେ ବେଶୀ ଲୋକେ ଆଦିବାସୀ । ସେମାନଙ୍କ କାନରେ ଗାନ୍ଧୀ ଡାକ ବାଜିଲା । ମାତି ଉଠିଲେ । ହଜାର ହଜାର ଲୋକ ମେଳବାନ୍ଧି ସରକାରୀ ଘର, ଥାନା ଉପରେ ଚଢ଼ାଉକଲେ । ଅଗଷ୍ଟ ଚବିଶ ତାରିଖରେ ପାପଡ଼ାହାଣ୍ଡିଠାରେ ପୁଲିସ ଗୁଳିକରି ପନ୍ଦର ଜଣଙ୍କୁ ମାରିଦେଲେ ଓ ବହୁ ସଂଖ୍ୟକ ଲୋକଙ୍କୁ ଖଣ୍ଡିଆ ମଣ୍ଡିଆ କରି



ଦେଲେ । ମାତଳରେ ମଲେ ଗୁରିଜଣ । ଲକ୍ଷ୍ମଣ ନାୟକ ଥିଲେ ସେମାନଙ୍କ ନେତା । ଜଣେ ଫରେଷ୍ଟ ଗାର୍ଡ଼ ବା ଜଙ୍ଗଲ ରଖୁଆଳି ଏହି ଗୋଳମାଳରେ

Digitized by srujanika@gmail.com

ମରିଥିଲେ । ସେଥିପାଇଁ ଲକ୍ଷଣ ନାୟକଙ୍କୁ ଦାୟୀ କରି ଗୋଟିଏ ମିଛ ମକଦ୍ଦମା କରାଗଲା । ତାଙ୍କୁ ଫାଶୀ ଦେଲେ ଲୋକେ ଡରିଯିବେ—ଏହି ବିଶ୍ବାସରେ ପ୍ରକୃତରେ ତାଙ୍କୁ ଫାଶୀ ଦଣ୍ଡ ଦିଆଗଲା । ସେ ପାଠ ପଢ଼ି ନଥିଲେ ସିନା ସାହସରେ କାହାଠାରୁ ପଛରେ ନ ଥିଲେ । ତାଙ୍କୁ ଯେତେବେଳେ ବ୍ରହ୍ମପୁର ଜେଲରେ ଫାଶୀଖୁଣ୍ଟ ପାଖକୁ ରାତିର ଶେଷ ପହରରେ ନିଆଯାଉ ଥାଏ ସେ ବଡ଼ ପାଟିରେ "ରଘୁପତି ରାଘବ ରାଜାରାମ" ବୋଲି କହି ମରଣ ବେଦୀରେ ଚଢ଼ିବା ପାଇଁ ଯାଉଥାଆନ୍ତି । ବ୍ରହ୍ମପୁର ଜେଲରେ ଓଡ଼ିଶାର ଶହଶହ ରାଜବନ୍ଦୀ ଥିଲେ । ସେମାନେ ଏହି ସମୟରେ "ଲକ୍ଷ୍ମଣ ନାୟକ ଜିନ୍ଦାବାଦ" ବୋଲି ଗୁଡିଏ ଫାଟିଲା ଗଳାରେ ଚିତ୍କାର କରୁଥାଆନ୍ତି । ସମସ୍ତଙ୍କ ଆଖିରେ ଧାର ଧାର ଲୁହ । ତାହା ପରଦିନ ଜେଲ ଭିତରେ ଯେଉଁ ଶୋକସଭା ହେଲା ସେଥିରେ ଗୁହାଯାଇଥିଲା—ବୀର ଶହୀଦ ତାଙ୍କ ମରଣ ପୂର୍ବରୁ କଅଣ ଭାବୁଥିବେ । ସେହି ଗୀତଟି ହେଉଛି—

ଶୟନେ ସ୍ୱପନେ  କିବା ଜାଗରଣେ
ନୟନେ ନାଚେ ତୋ ଗୁରୁ ଛବି,

ଯେତେ ଭୁଲାଇଲେ  ନ ଭୁଲେ ମୋ ମନ
ଭୟରେ ନ ଯାଏ ତଳେ ଦବି ।

ନିନ୍ଦା ଅପବାଦ ଭୋଗି ଭୋଗି
ତୋର ସ୍ନେହ ଲାଗି ହେଲି ଯୋଗୀ

ଶେଷରେ ଆଜ ମୁଁ  ଫାଶୀ କାଠେ ଯାଏ
କାଲି ତୋତେ ଆଉ ନ ଦେଖିବି ।

(ମା'ଲୋ) ନ ଶିଖିଲି ତୋର ବେକ କାଟି
ମୁଣ୍ଡ ଟେକ ନ ବୁଜିଲି ପାଟି

ଭାଇ ଭଉଣୀଙ୍କି  ଡର ନ କରିଲି
ଭାବିଲି ରହିବ ତାଙ୍କୁ ସେବି ।

ଚକଣ ଗୁହାଙ୍କୁ ଚହ୍ଲାଇ ମୁଁ ଦେଲି
ସତ କହି ଆଜ ସବୁ ହରାଇଲି

❋

Digitized by srujanika@gmail.com

ବଡ଼ ପାପୀ ବୋଲି ପ୍ରମାଣିତ ହେଲି
ମାଗିଲି ଯେଣୁ ମୋ ଘର ସ୍ୱତ୍ୱ ।
ତୋର ପାଶେ ମୋର ଏଇ ଶେଷ ଅଳି
ତୋ ସନ୍ତାନ ଜଣେ ଦେଉ ମୋତେ ଶୂଳି
ମଥା ଛୁଡ଼ି ଯାଉ ଆତ୍ମା ଉଡ଼ି ଯାଉ
ଧାଏଁ ତୋର ପାଦ ପଦ୍ମ ଛବ ।
ଜନମେ ଜନମେ ତୋପରି ଜନନୀ
ଲଭି ଦେଖେ ମୁହିଁ ଏ ସ୍ୱରୁ ଅବନୀ
ଲୋଡ଼ା ନାହିଁ ଆନ ଦେଶ, ଇନ୍ଦ୍ରପଦ
ବାସନା ତୋ କୋଳେ ଦ୍ରବ ହେବ ।

ବିଦେଶୀଙ୍କ ହାତରୁ ଦେଶ ମାଆକୁ ଉଦ୍ଧାର କରିବା ପାଇଁ ଯେଉଁ ବୀର ଫାଶୀକାଠରେ ହସି ହସି ଝୁଲିଲା ତା' କଥା ଏ ଦେଶ ଲୋକେ କେବେ ହେଲେ ଭୁଲିବେ ନାହିଁ । ତାହାର ପ୍ରମାଣ ମିଳୁଛି । ଫାଶୀର ଦଶବର୍ଷପରେ ଜାଣିପୁ କବି ବସ୍ତରିଲେ— ଲକ୍ଷ୍ମଣ ନାୟକଙ୍କୁ ସବୁଦିନେ ଓଡ଼ିଆ ପିଲାଏ ଯେମିତି ମନେ ପକାଇବେ ସେଥିପାଇଁ ଗୋଟିଏ ଗୀତ ଲେଖି ଦିଆଯାଉ । ସେ ସେମିତିକା ଗୋଟିଏ ଲେଖିଦେଲେ । ସେହି ଗୀତକୁ ଓଡ଼ିଶାର ସ୍ୱରଆଡ଼େ ବୋଲିଲା ବେଳେ ବଡ଼ମାନଙ୍କ ଆଖି ଛଳ ଛଳ ହୋଇଯାଏ । ମୁକତି ଲଢ଼ାଇର ଡାକରା ପାଇ ସେ କେମିତି ଆଗଭର ହୋଇ ଧାଇଁଗଲେ ଓ ସମସ୍ତଙ୍କୁ ପଛରେ ପକାଇ କେମିତି ମରଣ ବେଦିରେ ଯାଇ ଠିଆ ହୋଇଗଲେ—ସେଇ କଥାହିଁ ସେ ଗୀତରେ ଅଛି । ଗୀତଟି ହେଲା—

ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ଫାଶୀରେ ଚଢ଼ିଲୁ ଆମରି ପାଇଁ ।
ମୁକତି ଲଢ଼େଇ ଡାକରା ପାଇ
ଆଗଭର ହୋଇ ଆସିଲୁ ଧାଇଁ ।
ଜାତିକୁ କରି ତୁ ଗଳାର ମାଳ
ଦେଶ ଲାଗି ଦେଲୁ ଜୀବନ ଢାଳି ।
ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
 କୋରାପୁଟେ ଥିଲୁ ଜନମ ପାଇ ।

Digitized by srujanika@gmail.com

କୋରାପୁଟ ଜିଲା ଜଙ୍ଗଲ ଭରା
ବନରେ ଯେଉଁଠି ନ ପଡ଼େ ଖରା ।
ଜଙ୍ଗଲେ ଥାଆନ୍ତି ଆମର ଭାଇ
ଛନ୍ଦ କପଟ ସେ ଜାଣନ୍ତି ନାହିଁ ।
ମଠ, ମସଜିଦ୍, ଗିରଜା ଗଢ଼ି
ବଅନ୍ତି ନାହିଁ ସେ ବଅଙ୍କୁ ପଡ଼ି ।
ଖାଆନ୍ତି ନାହିଁ ସେ ଭାତରେ ଘିଅ
କ୍ରୁଦ୍ଧ ହେଲ ପର ତାଙ୍କର ବଧ ।
କିଏ ସରକାର କିଏ ବା ରଜା
ଜାଣନ୍ତି ନାହିଁ ସେ କାହା ପରଜା ।
ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ଏଭଳି ଜାଗାରେ ଜନମ ପାଇ ;
କିଏ ଶିଖାଇଲା ଦେଶର କଥା
ଫାଶୀକାଠେ ଦେଲୁ ପତାଇ ମଥା ।
ମାଆ କିଏ ତୋର ଖାଇ ଯା' କ୍ଷୀର
କାମ କରିଦେଲୁ ପରମ ବୀର ।
କାହା ସାଥେ ମିଶି ଖେଳିଲୁ ଧୂଳି
ଉଡ଼ିଗଲା ତୋତେ ବନ୍ଧୁକ ଗୁଳି ।
କେଉଁ ଗୁହାଳୀରେ ପାଠ ତୁ ପଢ଼ି
ଜାତି ଇତିହାସ ଗଲୁରେ ଗଢ଼ି ।
ହାତ ହତିଆର ନଥିଲା ତୋର
କେଉଁ ଗୁରୁ ଆସି ଦେଲା ମନ୍ତ୍ର ।
ଭାରତ ଜନନୀ ମୁକତି ପାଇଁ
ଜଳନ୍ତା ନିଆଁକୁ ପଡ଼ିଲୁ ଡେଇଁ ।
ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ଯୁଦ୍ଧରେ ପଶିଲୁ ଆମରି ପାଇଁ ।
ଦେଶ ସାରା ଯେବେ ଲାଗିଲା ଗୋଳ
ସାଇ ପଡ଼ଶା ତୁ କଲୁ ଠୁଳ ।

Digitized by srujanika@gmail.com

ଗରବେ ଟେକ ତୋ ବିଜୟ ମଥା
　　　　　　　　ଆଗୁଆ ହୋଇରେ କହିଲୁ କଥା ।
କହିଦେଲୁ ସଫା—"ଏ ଦେଶ ଛାଡ଼ି
　　　　　　　　ବିଦେଶୀଏ ତମେ ଯାଅରେ ଚାଲି ।
ଶୋଷି ଆମ ଲହୁ ନ କର ଶେଷ
　　　　　　　　ଆମେ ଚଳାଇବୁ ଆମର ଦେଶ ।"
ଲକ୍ଷଣ ଭାଇରେ ଲକ୍ଷଣ ଭାଇ
　　　　　　　　ତୋର କଥା ସିଏ ଶୁଣିଲେ ନାହିଁ ।
କୋରାପୁଟ ସାରା ପଡ଼ିଲା ଡାକ
　　　　　　　　ଥର ଉଠିଲା ଏ ଓଡ଼ିଶା ଯାକ ।
କୋରାପୁଟବାସୀ ଉଠିଲେ ଚାଙ୍ଗି
　　　　　　　　ମେଳ ବାନ୍ଧିଗଲେ ମେଳିଆ ଜାଙ୍ଗି ।
ସରକାରୀ ଘର ଜଙ୍ଗଲ କୋଠି
　　　　　　　　ଚଢ଼ାଉ କରିଲେ ଗୋଟିକି ଗୋଟି ।
ଚଉକିଦାରର ଜୀବନ ଗଲା
　　　　　　　　କିଏ ଜାଣେ ସିଏ କେମିତି ମଲା ?
ଲକ୍ଷଣ ଭାଇରେ ଲକ୍ଷଣ ଭାଇ
　　　　　　　　ବିନା ଦୋଷେ ତୋତେ କଲେ ଦାୟୀ ।
ରାଗରେ ତୋତେରେ ଆଣିଲେ ଧରି
　　　　　　　　ଖାଲି ମନମୁଖୀ ବିଚାର କରି ।
ଶୁଣାଇଲେ ରାୟ ପାଇବୁ ଫାଶୀ
　　　　　　　　ଜେଲ ଭିତରେ ରହିଲୁ ଆସି ।
ରହିଲା ତୋ ପାଖେ କଡ଼ା ପହରା
　　　　　　　　କାଳେ କିଛି କଥା ଘଟିବ ପରା ।
ଜୀବନ ଭିକ ତୁ ମାଗିବା ପାଇଁ
　　　　　　　　କିଏ କେତେ କଥା କହିଲେ ଭାଇ ।
ଜବାବ ଦେଲୁ ତୁ ନବାବ ପରି
　　　　　　　　ମରିବା ପାଇଁକି ନ ଗଲୁ ଡରି ।

Digitized by srujanika@gmail.com

କହିଲୁ—"ପୋଥି ବା ପୁରାଣେ କାହିଁ
ମିଛର ଜୟ ତ କେଉଁଠି ନାହିଁ ।
ସତରେ ଦୁନିଆ ଚାଲିଛି ସଦା
ମରିବାକୁ ମତେ ନ ଦିଅ ବାଧା ।
ବିନା ଦୋଷେ ଦୋଷ ମାନିବି କିଆଁ
ମରଣରେ ଜାଳ ଯିବରେ ନିଆଁ ।"
ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ତୋଠାରୁ ଏଭଳି ଜବାବ ପାଇ ।
ଉଠିଲା ଚାଲିଲା ମରଣ ବେଧା
ସେ ବେଧା ଆମର ମରମ ଭେଦା ।
ବାର ବାର ବେଧା ପରଖ ହେଲା
ଘନେଇ ଆସିଲା ଫାଶୀର ବେଳା ।
ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ସେଦିନ କଥା ମୁଁ ଭୁଲିବି ନାହିଁ ।
ସକାଳ ପହରୁ ପଡ଼ିଲା ହୁରି
ଛାଡ଼ିଯିବ ତୁମେ ମରତ ପୁରୀ
ପାହୁ ପାହୁ ରାତି ଯିବ ଯେ ଚାଲି
ସବୁରି ମନତ ହୋଇଲା ଖାଲି ।
କେତେ ସାଥୀ ଦୁଃଖେ କରିଲେ ଦେଖା
ତୁମ ମନ ଦୁଃଖ ନ ଥିଲା ଏକା
ଗଲାଦିନ କହି ଗଲ ତ ଯାହା
ଇତିହାସେ ଲେଖା ରହିବ ତାହା ।
କହିଲ—"ଆଉ କି ଅଛିରେ ଡେରି,
ବିଦେଶୀଏ ଯିବେ ଯିବେରେ ଫେରି ।
ତୁମେ ଚଳାଇବ ତୁମରି ଦେଶ
ମୋର କାମ ଯାହା କଲି ମୁଁ ଶେଷ
ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ସୁରୁଯ ଲୁଚିଲେ ପଶ୍ଚିମେ ଯାଇ ।

Digitized by srujanika@gmail.com

କାଳ ରାତ୍ରି ତହୁଁ ଆସିଲା ଘୋଟି
ମୁଦା ହେଲୁ ଆମେ ଗୋଟିକ ଗୋଟି ।
ଅଖିଆ ଅପିଆ ରାତ୍ରରେ ରହିଁ
ଲୁହା ବାଡ଼ ପାଖେ ଥାଉ କାନେଇ ।

ଘଣ୍ଟାରେ ଯେମିତି ବାଜିଲା ଚାର
ସଜଡ଼ା ଚାଲିଲା ଭୂମ ସୁଆର ।
ଜୟନାଦ ଦେଇ ବାପୁଜୀ ନାମେ
ଗ୍ଲାଭଫାଟା ହରି ଗ୍ଲାଡ଼ିଲୁ ଆମେ ।
ରାମ ନାମ ଡାକ ମୁହଁରୁ ତୋର
ଭାସି ଆସି ରୁନ୍ଧି କଲା ପଥର ।
ଆଣିଲେ ସିପାହୀ ତୋତେରେ ଧରି
ଜଅଲ ପାଚେରୀ ଉଠିଲା ଥରି ।
ଏଠିକା ଘଟଣା ଘଟିଲା ଯାହା
ଲେଖି ନ ପାରିବ ଆଜ ମୁଁ ତାହା ।
ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ଜୀବନ ବଞ୍ଚା ତୋ ଦେଲେ ଲିଭାଇ ।

ଇଆଡ଼େ ଆମେରେ କାନ୍ଦିଲୁ ବସି,
ସିଆଡ଼େ ବାଜଆ ଉଠିଲା ହସି
ନନ୍ଦନ ବନରୁ କୁସୁମ ତୋଳି
ଗୁନ୍ଥି ରଖିଥିଲା ଚନ୍ଦନ ଗୋଳି ।
ଗଳାରେ ମାଳଟି ପିନ୍ଧାଇ ଦେଇ
ପାଲ୍ଲେଟି ନେଲା ଯେ ଉଷତ ହୋଇ
ସାଥୀ ଭଗବନ୍ତ ସାଥିରେ ନେଇ
କହିଲେ "ଚିହ୍ନୁଚ କିଏ ସେ ଏଇ ?"
"ଚିହ୍ନି ପାରିବିନ ?" ନମିଲା କ୍ଷଣି
କୋଳକରି ନେଲେ ଉତ୍କଳମଣି ।
ଋଷୀ ମାଧ୍ୟାଧର ଆସିଲେ ଧାଇଁ,
ବିରଜା ଭୂମିରୁ ଥିଲେ ଯେ ଯାଇ ।

Digitized by srujanika@gmail.com

ଇରମ ମାଟିରେ ରକତ ଢାଳି
ମରଣ ପଥେ ଯେ ଗଲେରେ ଚାଲି ।
ସଭଏ ଆସି ତ ହୋଇଲେ ଠୁଳ
ଖେଳିଲ ସିଆଡ଼େ ଖୁସିର ଖେଳ ।
କବି ବାଞ୍ଛାନିଧି ଶାଳନ୍ଦୀ ମିତ
ଲେଖି ରଖିଥିଲେ ସ୍ୱାଗତ ଗୀତ ।
ବାବୁ ନିରଞ୍ଜନ ସେ ଗୀତ ଗାଇ
ସବୁରି ଅନ୍ତର ଦେଲେ ଥରାଇ ।
ଲକ୍ଷଣ ଭାଇରେ ଲକ୍ଷଣ ଭାଇ
ଅଦେଖା ରାଇଜେ ରହିଲୁ ଯାଇ ।
ଲକ୍ଷ୍ମଣ ଭାଇରେ ଲକ୍ଷଣ ଭାଇ
କହିବୁ କଥାଏ ମୋତେ ଫିଟାଇ ।
କେତେ କେତେ ଯୁଗ ଖଟିଲେ ଏଠି
ସେଠି ଯାଇ ତୋତେ ପାଇବି ଭେଟି ?

## ଇରମ ଭୂଇଁ ଆଗେଇଗଲା

ଓଡ଼ିଶାର ଦକ୍ଷିଣରେ ସ୍ୱରାଜ୍ୟ ଲଢ଼ାଇ ଜୋର୍ ସୋର୍‌ରେ ଚାଲିଥିଲାବେଳେ ଉତ୍ତରରେ ବାଲେଶ୍ୱର ଯେ ପଛରେ ଥାଏ—ଏକଥା କୁହାଯାଇ ପାରିବ ନାହିଁ । ଇରମ ଅଞ୍ଚଳର ଲୋକେ ସ୍ଥିର କରିଦେଲେ—"ଏହି ଅଞ୍ଚଳ ସ୍ୱାଧୀନ ହେଲା ।" ବାଟ ଘାଟରେ ସୁବିଧା ନଥାଏ । ତେଣୁ ପୁଲିସ ଯିବାରେ ଅସୁବିଧା ଥାଏ । କିଛିଦିନ ପରେ ଯାଇ ଲୋକଙ୍କୁ ଉଚିତ ଶିକ୍ଷା ଦେବେ ବୋଲି ବହୁ ବନ୍ଧୁକରେ ଗୁଳି ଭର୍ତ୍ତି କରି ବାହାରି ପଡ଼ିଲେ । ଲୋକେ ଯେଉଁଠି ସଭା କରୁଥିଲେ ସେହିଠାରେ ପହଞ୍ଚି ଯାଇ ଗୁଳି ଚଳାଇଦେଲେ । ଛବିଶ ଜଣ ସଙ୍ଗେ ସଙ୍ଗେ ଢଳି ପଡ଼ିଲେ । ତାଠାରୁ ବହୁ ଅଧିକ ଲୋକେ ଗୁଳି ମାଡ଼ ଖାଇଲେ । ବୀରମାନଙ୍କ ଉଷ୍ମ ରକତ ଇରମ ଭୂଇଁକୁ ଭିଜାଇ ଦେଲା । ସବୁଠାରୁ ଅଧିକ ସାହସ ଦେଖାଇଥିଲା ଜଣେ ବୁଢ଼ୀ । ତା' ନାଁ ପଶି ବେଓ୍ୱା । ସେହି ସଭାରୁ ପଳାଇ ଆସିଥିଲେ ତାହାର ଜୀବନ ରହିଯାଇ ଥାଆନ୍ତା । କିନ୍ତୁ ସେ ତା' କଲା ନାହିଁ । ଦନ୍ତ ଧରି ସେଇଠି ବସି ରହିଲା । ତା'ଠାରେ ଗୁଳି ବାଜିଲା—ଦେହରୁ ଛୁଟିଲା

Digitized by srujanika@gmail.com

ରକତ ସୁଅ । ତା' ପ୍ରାଣ ଗ୍ଲୁଡ଼ିଗଲା । ଲୁଣିଆ ଅଞ୍ଚଳରେ ଆଠ ଜଣ ଗୁଳି ଆଗରେ ନିଜକୁ ବଳୀ ଦେଇ ଅମର ହୋଇଗଲେ । ଖଇରାଡ଼ିହ ମଧ୍ୟ ପଛୁଇଲା ନାହିଁ । କଟକ ଜିଲାର ବହୁ ଅଞ୍ଚଳ ଦୁଲ୍ ଦୁଲ୍ କମ୍ପିଲା । ସେମାନଙ୍କୁ ଡରାଇ ଦେବା ପାଇଁ ଗୁଡ଼ିଏଜଣଙ୍କୁ ଗୁଳିରେ ଉଡ଼ାଇ ଦିଆଗଲା ।



ପୁରୀର ନିମାପଡ଼ାରେ ଜଣେ ଲୋକ ସ୍ୱରାଜ ଲଢ଼େଇ ଯଜ୍ଞରେ ପ୍ରାଣ ଦେଲେ । ଢେଙ୍କାନାଳ, ତାଳଚେର, ନୟାଗଡ଼ ପ୍ରଭୃତି ସ୍ଥାନରେ ଲୋକେ ଯେମିତି ତେଜି ଉଠିଲେ, ଏତେ ବର୍ଷ ପରେ ଆଜି ସେକଥା ବିଶ୍ୱାସ କରିବାକୁ ମଧ୍ୟ ସାହସ ହେବନାହିଁ । ନୂଆଗାଁରେ ସିନା ଜଣେ ମଲେ, ଅଧଶହ ଲୋକେ ଆହତ ହୋଇ ପଡ଼ିଲେ । କଟକର ଏରସମା ଥାନାକୁ ହଜାର ହଜାର ଲୋକ ଆସି ପୋଡ଼ିଦେଲେ । ପୁଲିସ ସେ ଅଞ୍ଚଳରେ ପଶିବା ପାଇଁ ଭୟ କଲେ । ଉପରେ ଉଡ଼ାଜାହାଜ ଉଡ଼ି ଗୁଳି ଚଳାଇ ଲୋକଙ୍କୁ ଡରାଇ ସାରିଲା ପରେ, ପୁଲିସ ଆସି ଆଖିବୁଜି ମାଡ଼ ଦେଲେ—ଶହେ ଲୋକଙ୍କୁ ଗିରଫ କରି ନେଲେ । ଏଠାରେ ଦାସ ମଳିକ ଚଉକିଆ ନିଜ ପୋଷାକରେ ନିଆଁ ଲଗାଇ ଥାନା ଘରକୁ ଫୋପାଡ଼ି ଦେଲା । ଥାନା ପୋଡ଼ିଗଲା ।

## ଓଡ଼ିଶାର ବୀର ପଣିଆ :

ସେତେବେଳେ ଓଡ଼ିଶାର ସବୁ ଅଞ୍ଚଳର ଖବର ଜଣା ପଡ଼ୁ ନଥାଏ । ପରେ ଯେତେବେଳେ ଜଣାପଡ଼ିଲା ସେତେବେଳେ ଓଡ଼ିଶାର ବୀର

Digitized by srujanika@gmail.com

ପଣିଆର ପ୍ରକୃତ ପରିଚୟ ମିଳିଲା । ମୋଟରେ ଗ୍ୱରି ହଜାର ଲୋକଙ୍କୁ ଗିରଫ କରି ନିଆ ଯାଇଥିଲା । ପାଞ୍ଚଶହ ଲୋକଙ୍କୁ ଅଟକ ବନ୍ଦୀ କରି ଦୁଇରୁ ତିନି ବର୍ଷ କାଳ ଜେଲରେ ରଖାଯାଇଥିଲା । ବାହାରେ ସେମାନଙ୍କ ପିଲା, ଝିଆ, ବାପ, ମା' ଦୁଃଖ କଷ୍ଟ ଭୋଗୁଥିଲେ । ଏହି ପାଞ୍ଚ ଶହଙ୍କ ବିରୁଦ୍ଧରେ କିଛି ପ୍ରମାଣ ନ ମିଳିଥିଲେ ମଧ୍ୟ ଅନିର୍ଦ୍ଦିଷ୍ଟ ଅଟକ । କୋରାପୁଟରୁ ୨୫; ବଣ୍ଡା ଜଳାମାଟିଆରୁ ୪; ବାଲେଶ୍ୱରର ଇରମରୁ ୨୮; ଲୁଣିଆରୁ ୧୦; ଜଳେଶ୍ୱର ଥାନାରୁ ୪; ପୁରୀର ନିମାପଡ଼ାରୁ ଜଣକୁ ଗୁଳି କରି ମାରି ଦିଆଯାଉଥିଲା । କୋରାପୁଟ ଜିଲ୍ଲାରେ ରାଜବନ୍ଦୀମାନଙ୍କୁ ଜେଲ ଭିତରେ ଏଭଳି କଦର୍ଯ୍ୟ ଭାବରେ ରଖାଗଲା ଯେ ସେମାନଙ୍କ ଭିତରୁ ପଚାଶ ଜଣ ମରିଗଲେ । ବହୁ ଅଞ୍ଚଳରୁ ଜୋରିମାନା ନାମରେ ହଜାର ହଜାର ଟଙ୍କା ସରକାର ଲୁଟ୍ କରିନେଲେ ।

ଓଡ଼ିଶା ବିଷୟରେ ଏହି ଯେଉଁସବୁ କଥା କୁହାଗଲା ଭାରତର ସବୁ ଅଞ୍ଚଳ ବିଷୟରେ ସେହିକଥା କୁହାଯାଇ ପାରେ । ଉତ୍ତରପ୍ରଦେଶ, ବିହାର ଏମିତି ଭାରତ୍ୱ ଦେଖାଇଲେ ଯେ ସେ ଅଞ୍ଚଳକୁ ବହୁ ଗୋରା ସୈନ୍ୟଙ୍କୁ ପଠାଯାଇଥିଲା ଲୋକଙ୍କୁ ଜବତ କରିବା ପାଇଁ । ଜୋରିମାନା ଆଦାୟ ନାଁରେ ଗାଁକୁ ଗାଁ ଲୁଟ୍ ହେଉଥାଏ । ପଶ୍ଚିମ ଭାରତରେ ଜଣେ କଲେଜ ଛାତ୍ରକୁ ଫାଶୀ କାଠରେ ଝୁଲାଇ ଦେଲେ ଭାରତର ସବୁ ଛାତ୍ରଙ୍କୁ ଡରାଇବା ପାଇଁ । ସେହି ଶହୀଦ ବୀର ଛାତ୍ରର ନାମ—ହେମୁ କଲାଣୀ । ତାହାର ଅପରାଧ ହେଲା ସେ ରେଳ ଲାଇନ ଉଠାଇ ଦେଉଥିଲା !

ବାହାରେ ଏମିତି ହେଉଥିଲାବେଳେ ବନ୍ଦୀ ହୋଇ ରହିଥିବା ଗାନ୍ଧୀଙ୍କ ମନ ଖାଲି ଉଚ୍ଛନ୍ନ ହେଉଥାଏ । ଜେଲ ଭିତରେ ଦୁଇଜଣଙ୍କର ମୃତ୍ୟୁ ତାଙ୍କୁ ଖୁବ୍ ବାଧିଥାଏ । ଜଣେ ହେଉଛନ୍ତି ମହାଦେବ ଦେଶାଇ । ଗାନ୍ଧୀ ତାଙ୍କୁ ନିଜ ପୁଅ ଭଳି ଭଲ ପାଉଥିଲେ । ଅଳ୍ପ ବୟସରେ ସେ ଆସି ଗାନ୍ଧୀଙ୍କ ପାଖରେ ପହଞ୍ଚିଥିଲେ । ସେହି କାଳରୁ ସେ ତାଙ୍କ ପାଖେ ପାଖେ ଛାଇ ଭଳି ଥିଲେ । ସମସ୍ତେ ତାଙ୍କୁ "ଗାନ୍ଧୀଙ୍କ ସେକ୍ରେଟାରୀ" ବୋଲି ଜାଣି ଥିଲେ । ଗାନ୍ଧୀଙ୍କ କୋଳରେ ମୁଣ୍ଡ ଦେଇ ସେ ଜେଲଖାନା ଭିତରେ ଅଗଷ୍ଟ ପନ୍ଦର ତାରିଖରେ ଆଖି ବୁଜିଦେଲେ । ଆଉ ଜଣେ ହେଲେ କସ୍ତୁରୀ ବାଈ । ଗାନ୍ଧିଜୀ ତାଙ୍କ ଜୀବନରେ ଯେତେ

Digitized by srujanika@gmail.com

ଯେତେ ଲଢ଼ାଇ କରିଛନ୍ତି ସବୁଥିରେ ସେ ତାଙ୍କ ସହ୍ବିତ କାନ୍ଧକୁ କାନ୍ଧ ମିଳାଇ ଦେଇଛନ୍ତି । ସେ ମଧ୍ୟ ଜେଲ ଭିତରେ ଆଖି ବୁଜି ଦେଲେ ୧୯୪୪ ମସିହା ଫେବୃୟାରୀ ବାଇଶି ତାରିଖ ଦିନ । ଦୁଇଟି ଯାକ ଧକ୍‌କା ସମ୍ଭାଳି ଯାଇ ସେ ମନ ଦମ୍ଭରଖି ଦେଶକଥା ଭାବୁଥାଆନ୍ତି । ଥରେ ଅନଶନ କରି ମରିବା ଅବସ୍ଥାକୁ ଅସି ଯାଇଥିଲେ ।

## ଦୁନିଆ ବଦଳି ଯାଉଥାଏ

ଏକଥା ସତ ଯେ ବାହାରକୁ ଦେଖିଲା ବେଳକୁ ଭାରତରେ ମୁକତି-ଲଢ଼ାଇ ଟିକିଏ ମଉଳଣ ପଡ଼ି ଯାଇଥାଏ । ଯେଉଁ ଦେଶରେ ଲୋକଙ୍କ ହାତରେ କୌଣସି ଅସ୍ତ୍ରଶସ୍ତ୍ର ନାହିଁ; କୋଟି କୋଟି ଲୋକେ ବନ୍ଧୁକକୁ ପାଖରୁ ମଧ୍ୟ ଦେଖିନାହାନ୍ତି, ଦେଢ଼ ଶହ ବର୍ଷରୁ ଅଧିକ କାଳ ଧରି ଲୋକଙ୍କୁ କେବଳ ଡରାଇ ହରାଇ ରଖାଯାଇଛି; ଲୋକେ ଏଭଳି ମୂର୍ଦ୍ଧାର ପାଲଟି ଯାଇଛନ୍ତି ଯେ ଗାଁ ଭିତରକୁ ଜଣେ ପଗଡ଼ିଆ ସିପାହୀ ପଶି ଆସିଲେ ଲୋକେ କବାଟ କିଳିଦିଅନ୍ତି, ସେହିଭଳି ଗୋଟିଏ ଦେଶରେ ଗାନ୍ଧୀ ଆସି ଊଣେଇଶ ଶହ କୋଡ଼ିଏରେ ଲୋକଙ୍କ କାନରେ ନିଡ଼ର ମନ୍ତ୍ର ଫୁଙ୍କିଲେ—ନିର୍ଭୟ ବାଣୀ ଶୁଣାଇଲେ । ଖାଣ୍ଡୁର ନୁହେଁ—ସବଳର ଅହିଂସା ଭଳି କଥା କହି ଲୋକଙ୍କ ଭିତରେ ସାହାସ ଭରିଲେ । ମାତ୍ର କୋଡ଼ିଏଟା ବର୍ଷରେ ଲୋକେ ଆଉ ଅଧିକ ସାହାସୀ ହୋଇଥାଆନ୍ତେ ବା କେମିତି ? ଅତ୍ୟାଚାର କରିବାର ଗୋଟାଏ ସୀମା ଅଛି । ସରକାର ସେ ସୀମା ଟପି ଯାଇଥିବାରୁ ଲୋକେ ଟିକିଏ ଦବି ଯାଇଥାଆନ୍ତି । ଭିତରେ ଭିତରେ ନିଆଁ କୁହୁଳୁଥାଏ—ଉପରକୁ ଜଣା ପଡ଼ୁନଥାଏ ।

ଆମ ଦେଶରେ ଏହି ଅବସ୍ଥା ଥିଲା ବେଳେ ତେଣେ ଇଂରେଜ ଜାତି ଇଉରୋପରେ ଯୁଦ୍ଧରେ ଜିଣି ଯାଉଥାଏ । ହିଟଲରଙ୍କ ସୈନ୍ୟମାନେ ହାରିଯାଇ ପଛକୁ ହଟିବାରେ ଲାଗି ଥାଆନ୍ତି । ଏଣେ ଜାପାନ ମଧ୍ୟ ହାରିଯିବ ବୋଲି ଜଣା ପଡ଼ିଲାଣି । ସମସ୍ତେ ଧରିନେଇଥିଲେ ଯେ ଆଉ ଅନ୍ତତଃ ପଞ୍ଚ ବର୍ଷ ପାଇଁ ଗାନ୍ଧୀ ଓ କଂଗ୍ରେସ ଲୋକେ ଜେଲରେ ନିଶ୍ଚୟ ରହିବେ ।

କିନ୍ତୁ ଦୁନିଆର ସବୁ କଥାତ ଏମିତିକା ହିସାବ କିତାବରେ ଶେଷ ହୁଏ ନାହିଁ । ଭାରତରେ ଇଂରେଜ ସରକାର ଯେଉଁଳି ଅତ୍ୟାଚାର କରିଥିଲେ

Digitized by srujanika@gmail.com

ସେଥିରେ ବିଲାତର ବହୁ ସଂସ୍କାରବାଦୀ ଲୋକେ ଲଜ୍ଜିତ ହେଉଥାଆନ୍ତି । ଯେତେ ଲୁଚାଇଲେ ମଧ୍ୟ ସରକାର ଯେତେବେଳେ ବିଲାତ ପାର୍ଲିଆମେଣ୍ଟରେ କହିଲେ— ୧୯୪୨ ଅଗଷ୍ଟ ୯ ତାରିଖରୁ ନଭେମ୍ବର ୧୦ ତାରିଖ ଭିତରେ



ମାତ୍ର ୯୦ ଦିନରେ ଭାରତରେ ହଜାରେ ଆଠ ଜଣଙ୍କୁ ମାରିଦିଆ ଯାଇଛି, ୩ ହଜାର ୨ ଶହ ୭୬ ଜଣଙ୍କୁ ସାଂଘାତିକ ଭାବରେ ଖଣ୍ଡିଆ-ମଣ୍ଡିଆ କରି ଦିଆଯାଇଛି ଓ ୧ ଲକ୍ଷରୁ ଅଧିକ ଲୋକଙ୍କୁ ବନ୍ଦୀକରି ରଖାଯାଇଛି— ସେତେବେଳେ ବିଲାତର ଓ ଇଉରୋପର ଅନେକ ଭଲ ଓ ସଂସ୍କାରବାଦୀ ଲୋକେ ସରକାରଙ୍କୁ ପଚାରିଲେ—"ଭାରତର ଲୋକେ ତ ଗୁଳି ବନ୍ଧୁକ ନେଇ ତୁମ ସହିତ ଲଢ଼ୁ ନ ଥିଲେ । କିଏ କେଉଁଠି ସରକାରୀ ଘରଦ୍ୱାର ପୋଡ଼ିଦେଲା ବା ସେମିତି କିଛି ଅପରାଧ କଲା । ସେଥିରେ ତୁମେ ଏତେ ଲୋକଙ୍କୁ ମାରିଦେଲ ! ପୁଣି ତ ଶୁଣାଯାଉଛି ଯେ ତୁମେ ଯେଉଁ ହିସାବ ଦେଉଛ ତାହାଠାରୁ ଢେର ଅଧିକ ଲୋକଙ୍କୁ ହୁଏତ ମାରିଛ ବା ଅକର୍ମଣ୍ୟ କରି ଦେଇଛ । ଯେଉଁ ଦେଶରେ ତୁମେ ଏଭଳି କାଣ୍ଡ କରି ସାରିଲଣି ସେ ଦେଶରେ ପୁଣି ଶାସନ ଚଳାଇବ କେମିତି ? ଗୋଟାଏ ସଭ୍ୟ ଜାତି ପ୍ରତି ଏଭଳି ଆଚରଣ ଦେଖାଇଲା ପରେ ଲୋକଙ୍କ ଆଗରେ ମୁହଁ ବା ଦେଖାଇବ କେମିତି ? ଭାରତର ଯେଉଁ ଶିକ୍ଷିତ ଲୋକେ ଗାନ୍ଧୀଙ୍କ ଡାକରାରେ ସରକାର ବିରୁଦ୍ଧରେ କାମ କରି ନାହାନ୍ତି ସେମାନଙ୍କ ମନରେ କ'ଣ ଘୋର ଦୁଃଖ ନ ହୋଇଥିବ ? ଯେମିତି ଦେଖା ଯାଉଛି ଆହୁରି ହଜାର ହଜାର ଲୋକଙ୍କୁ ନ ମାରିଲେ, ଲକ୍ଷ ଲକ୍ଷ ଲୋକଙ୍କୁ ବନ୍ଦୀ କରି ନ ରଖିଲେ ବ୍ରିଟିଶ

Digitized by srujanika@gmail.com

ଜାତି ତ ଭାରତରେ ଶାସନ ଚଳାଇ ପାରିବ ନାହିଁ । ଏମିତି କଅଣ ହୁଏ ? ଏ ପ୍ରଶ୍ନର ଉତ୍ତର ସରକାର ଦେଇ ପାରୁ ନ ଥାନ୍ତି । ଏଣେ ଭାରତରେ ଲୋକେ ବିଗ୍ଭର କରିବାକୁ ଆରମ୍ଭ କଲେଣି ଇଂରେଜମାନେ ଯୁଦ୍ଧରେ ଜିଣୁଛନ୍ତି ସତ, କିନ୍ତୁ ସେମାନଙ୍କର ଯେତେ ଲୋକ ମଲେଣି, ହଜାର ହଜାର ଲକ୍ଷ ଲକ୍ଷ ଗଜାଟୋକା ଯୁଦ୍ଧ ଭୂଇଁରେ ଝଳିପଡ଼ିଲେଣି, ସେଥିରେ ସେ ଜାତିର ମେରୁଦଣ୍ଡ କଅଣ ବଙ୍କା ହୋଇ ଯାଇନାହିଁ ? ଯାହା କ୍ଷତି ହେଲାଣି ତାକୁ ପୂରଣ କରିବା ପାଇଁ ସେମାନେ ତ ପୁଣି ବଣିଜ ବେପାର ଚଳାଇବେ । ଆମ ଦେଶରେ ସେମାନେ କେମିତି ଜବରଦସ୍ତ ବେପାର ଚଳାଇବେ ଦେଖିବା ! ଏକା ମାଘକେ କ'ଣ ଶୀତ ଗ୍ଭଲିଗଲା ? ଯୁଦ୍ଧବେଳେ ସିନା ବିଲାତ ସହିତ ରୁଷ ମେଣ୍ଟ ବାନ୍ଧିଥିଲା । ଯୁଦ୍ଧପରେ ସେ ଦୁଇ ଦେଶର ପୁଣି ବିବାଦ ଲାଗିବ । କମିଉନିଷ୍ଟ ରୁଷ ଓ ପୁଞ୍ଜିବାଦୀ ବିଲାତ କେବେ-ହେଲେ ସବୁଦିନ ପାଇଁ ବନ୍ଧୁହୋଇ ରହି ପାରିବେ ନାହିଁ । ଆମେ ରୁଷ ଆଡ଼କୁ ଚାଳିବା—ଯାହା ହେବାର ହେଉ ପଛକେ । ଲୋକେ ଏଭଳି ଚିନ୍ତା କଲେଣି ବୋଲି ବିଲାତ ସରକାର ଖବର ପାଉଥାଆନ୍ତି । କୌଣସି କଥା ଲୁଚି ରହେ ନାହିଁ । ବିଲାତର ପ୍ରଧାନମନ୍ତ୍ରୀଙ୍କ ପାଟିରୁ ଗୋଟାଏ କଥା ପାର୍ଲିଆମେଣ୍ଟରେ ବାହାରି ପଡ଼ିଲା । ସେ ଖୁବ୍ ବାହାଦୁରୀ ଦେଖାଇ କହୁଥିଲେ—"ଆମେ ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଦବାଇ ଦେଇଛୁ । ଏମିତିକା ମାଡ଼ ଚଢ଼ାଇଲୁ ଯେ ସେମାନେ ଆଉ ମୁଣ୍ଡଟେକି ଠିଆହୋଇ ପାରିଲେ ନାହିଁ । ଆମେ ଏଠାରୁ ବହୁ ସଂଖ୍ୟକ ଗୋରା ସୈନ୍ୟଙ୍କୁ ସେ ଦେଶକୁ ପଠାଇଲୁ ଏହି କାମ ପାଇଁ । ଆମ ରାଜୁତି ସେ ଦେଶରେ ଆରମ୍ଭ ହେଲା ଦିନୁ ଏତେ ସଂଖ୍ୟାରେ ଇଂରେଜ ସୈନ୍ୟ କେବେ ହେଲେ ସେଠାକୁ ଯାଇ ନଥିଲେ" । ତାଙ୍କର ଏହି କଥାରୁ ସ୍ପଷ୍ଟ ହୋଇଗଲା ଯେ ଭାରତୀୟ ସୈନ୍ୟଙ୍କୁ ସେତେବେଳେ ଇଂରେଜ ଜାତି ବିଶ୍ୱାସ କରି ପାରୁ ନ ଥିଲେ । କାଳେ ସେମାନେ ବନ୍ଧୁକକୁ ଓଲଟାଇ ଦେଖାଇଦେବେ, ଏହି ଆଶଙ୍କା ବରାବର ଥିଲା ।

## ଗାନ୍ଧୀଙ୍କୁ ଖଲାସ କରିଦେଲେ :

୧୯୪୪ ଏପ୍ରିଲ ବେଳକୁ ବିଲାତ ସରକାର ନୂଆ ଭାବରେ ଚିନ୍ତା କଲେଣି । ଯୁଦ୍ଧ ପରେ ଭାରତକୁ ଯଦି ନିଜ ଅଧୀନରେ ରଖିବେ ସେ,

Digitized by srujanika@gmail.com

ଦେଶ ସଙ୍ଗତ ଶାନ୍ତମତ ଲଢ଼େଇ କରିବାକୁ ହେବ । ଗାନ୍ଧୀଙ୍କର ପ୍ରଭାବ କେତେ ଜଣାପଡ଼ିଗଲାଣି । ତାଙ୍କ ପାଟିରୁ ବାହାରି ପଡ଼ିଲା, "କର ବା ମର" —ସେଥିରେ ଲୋକେ ଏମିତି ପାଗଳ ହୋଇଗଲେ ଯେ ଅତି କମ୍‌ରେ ୫୩୮ ସ୍ଥାନରେ ଗୁଳି ଚଳାଇବାକୁ ପଡ଼ିଲା । ଉଡ଼ାଜାହାଜରୁ ମେଶିନ ଗନ୍ ଚଳାଇବାକୁ ହେଲା । ୧୫୩୮ ଜଣଙ୍କୁ କୋରଡ଼ାରେ ପିଟିଲେ ମଧ୍ୟ ସେମାନେ ଡରିଲେ ନାହିଁ । ଲକ୍ଷ ଲକ୍ଷ ଟଙ୍କା ଜୋରିମାନା ଆଦାୟ କରାଗଲା ଲୋକଙ୍କ ଘର କୋରଖ କରି । ପୁଣି ଯଦି ସେହି ଅହିଂସା ଲଢ଼ାଇ ସେମାନେ କରିବେ ବିଲାତରୁ ହଜାର ହଜାର ଗୋରା ସୈନ୍ୟଙ୍କୁ ପଠାଇବାକୁ ପଡ଼ିବ ଅଧିକ ଲୋକଙ୍କୁ ମାରିବା ପାଇଁ । ବିଲାତ ହୋଇଯିବ ଦୁର୍ବଳ । ବିଲାତର ଲୋକେ ଯେ ଏଭଳି କାମକୁ ସମର୍ଥନ କରିବେ ତାହାର ବା କେଉଁ ଠିକଣା ଅଛି ? ବରଂ ଭଲ ହେବ ଗାନ୍ଧୀଙ୍କୁ ଖଲାସ କରିଦେଇ ଗୋଟାଏ କିଛି ମିଳାମିଶା କରିବା ପାଇଁ କଥାବାର୍ତ୍ତା ଚଳୁରଖିବା । ଖଲାସକରି ଦେଖାଯାଉ କଅଣ ହେଉଛି । ଏମିତି ବିଚାରି ସେମାନେ ୧୯୪୪ ମେ ମାସ ଛ' ତାରିଖ ସକାଳେ ତାଙ୍କୁ ଆଗା ଖାଁ ପାଲେସ୍ ଜେଲରୁ ଖଲାସ କରିଦେଲେ । ଏହି ଖବର ଦେଶରେ ଗୋଟାଏ ନୂଆ ପ୍ରକାରର ଚହଳ ପକାଇଦେଲା । କିଛି ଦିନ ପୂର୍ବରୁ ଗାନ୍ଧୀଙ୍କୁ ଜ୍ୱର ହୋଇ ସେ ଦୁର୍ବଳ ହୋଇଯାଇଛନ୍ତି ବୋଲି ସରକାରଙ୍କ ପକ୍ଷରୁ କୁହାଯାଇଥିଲା । ତାହାପରେ ଆସ୍ତେ ଆସ୍ତେ ବହୁ ବନ୍ଦୀ ଜେଲରୁ ବାହାରିଗଲେ ।

ଜେଲ ଭିତରେ ଥିଲାବେଳେ ତ ଗାନ୍ଧିଜୀ ବଡ଼ଲାଟଙ୍କ ସହିତ ବରାବର ଚିଠିପତ୍ର ଚଳାଇଥିଲେ । ସରକାର ମଝିରେ ମଝିରେ ବରାବର କୁହନ୍ତି କଂଗ୍ରେସ ଲୋକେ ହିଂସାକାଣ୍ଡ କଲେ; ଗାନ୍ଧୀ ସେଥିପାଇଁ ଦାୟୀ, ସେ ଲୋକଙ୍କୁ ମତାଇଲେ । ବାପୁଜୀ ଉତ୍ତର ଦିଅନ୍ତି—କିହୋ, ମୁଁ କେମିତି ଦାୟୀ ହେବି ? ମୁଁ ତ ବଡ଼ଲାଟଙ୍କ ପାଖକୁ ଅଗଷ୍ଟ ୮ ତାରିଖରେ ଚିଠି ଲେଖିଲି କଥାବାର୍ତ୍ତା କରି ଗୋଟାଏ କିଛି ମିଳାମିଶା କରିବା ପାଇଁ । ତୁମେ ସେହି ରାତି ପାହାନ୍ତାରେ ମୋତେ ଗିରଫ କରି ଜେଲରେ ରଖିଦେଲ । କେବଳ ମୋତେ ନୁହେଁ—ଦେଶର ସବୁ ବଡ଼ ବଡ଼ ନେତା କର୍ମୀଙ୍କୁ ବନ୍ଦୀକରି ଦେଲ । ଲୋକେ ତାର ପ୍ରତିବାଦ କଲେ । ଯାହା ମନକୁ ଯାହା ଆସିଲା ସେମାନେ କଲେ । ହିଂସା ଅହିଂସା ପ୍ରଶ୍ନ ଉଠାଇବାକୁ

Digitized by srujanika@gmail.com

ତୁମେ ଇଂରେଜମାନେ କିଏ ? ମୁଁ ଅହିଂସାରେ ବିଶ୍ୱାସ କରେ । ତେଣୁ ଲୋକଙ୍କୁ କହୁଥିଲି ତୁମେମାନେ ହିଂସା କର ନାହିଁ । ସେମାନଙ୍କୁ ବାଟ ଦେଖାଉଥିଲି କେମିତି ଅହିଂସା ଲଢ଼େଇ କରିବାକୁ ହେବ । ତୁମେ ତ କେବଳ ଗୁଳି ବନ୍ଧୁକର ଭାଷା ଜାଣ । ତୁମେ ତ ଶହ ଶହ ନିରୀହ ଅହିଂସ ଲୋକଙ୍କୁ ମାରି ଶୁଆଇ ଦେଲ । ଲୋକେ ତାହାର ପ୍ରତିବାଦରେ କିଅଣ କଲେ ସେଥିପାଇଁ ମୁଁ କେମିତି ଦାୟୀ ରହିବି ? ସରକାରଙ୍କର ଭୁରୁଡ଼ି ଉତ୍ତର ଆସେ । ଜେଲରୁ ବାହାରିଲା ପରେ ମଧ୍ୟ ସେମିତିକା ଚିଠିପତ୍ର ଚାଲିଲା ।

କ୍ରମେ ସବୁକଥା ଟିକିଏ ଥଣ୍ଡା ଧରିଯିବାରୁ ଭାରତକୁ ବିଲାତ ସରକାର କେତେ ଶାସନ କ୍ଷମତା ଦେବେ ସେ ବିଷୟରେ ଆଲୋଚନା ଚଳାଇବା ପାଇଁ ବିଲାତରୁ ପ୍ରସ୍ତାବ ଆସିଲା । ତିନି ବର୍ଷକାଳ ଏହି କଥାବାର୍ତ୍ତା ଚାଲିଲା । ବ୍ରିଟିଶ ସରକାରଙ୍କୁ କୁହାଗଲା—ଭାରତ ପୂରାପୂରି ସ୍ୱାଧୀନ ହେବ । ସେ ବିଷୟରେ କୌଣସି ରଫା ଦଫାର ପ୍ରଶ୍ନ ନାହିଁ । ଏଣିକି ତୁମେ ଯାହା କରୁଛ କର । ବିଲାତ ସରକାର ଦେଖିଲେ— ସେମାନଙ୍କୁ ଏ ଦେଶରୁ ବିଦାୟ ନେବାକୁହିଁ ହେବ । କିନ୍ତୁ ଏତେ ବଡ଼ ଦେଶଟାକୁ ଯଦି ସେମିତି ରଖିଦେଇ ଯିବେ ଭବିଷ୍ୟତରେ ଭାରତ ଗୋଟାଏ ଅତି ଶକ୍ତିଶାଳୀ ଦେଶ ହୋଇଯିବ । ତେଣୁ ତାକୁ ଦି' ଭାଗ କରି ଦିଆଯିବ । ଗୋଟିଏ ଭାଗ ମୁସଲମାନ ଦେଶ ହୋଇ ରହିବ । ସେମାନଙ୍କର ଏହି କୁପାଞ୍ଜକୁ କାମରେ ଲଗାଇବା ସହଜ ହୋଇଗଲା, ଯେତେବେଳେ ଜିନ୍ନା ଜିଦ୍ ଧରିଲେ ଯେ ଭାରତରୁ ଖଣ୍ଡେ ଅଲଗା କରିଦେଇ ମୁସଲମାନ ମାନଙ୍କୁ ଦେଇ ଦିଅ । ତାହାର ନାମ ରହିବ "ପାକିସ୍ଥାନ" । ମୁସଲମାନ ମାନଙ୍କୁ ସେ ଏଭଳି ମତାଇଲେ ଯେ ଦେଶର କେତେ ଅଞ୍ଚଳରେ ହିନ୍ଦୁ ମୁସଲମାନ ହାଣକାଟ ଆରମ୍ଭ ହୋଇଗଲା । ଶେଷକୁ ଏମିତି ହେଲା ଯେ କଂଗ୍ରେସ କହିଲା—"ଦେଶ ପଛକେ ଦୁଇ ଭାଗ ହୋଇଯାଉ, ତୁମେ ବିଲାତ ଲୋକେ ଏ ଦେଶରୁ ଯାଅ ।"

ଏ ପ୍ରସ୍ତାବ ଶୁଣି ଗାନ୍ଧୀଙ୍କ ପ୍ରାଣ କାନ୍ଦି ଉଠିଲା । ସେ କହିଲେ ଭାରତ ଭୂଇଁ ଏଭଳି ଭାଗ ଭାଗ ହୋଇଯିବା ଦୃଶ୍ୟ ମୁଁ ଦେଖି ପାରିବି ନାହିଁ । ଗାନ୍ଧୀ ଯଦି ଜିଦ୍ ଧରୁଛନ୍ତି କଂଗ୍ରେସ କେମିତି କିଅଣ କରିବ ? ତେଣେ ବିଲାତ ସରକାର କହିଲା—ଭାରତର ଲୋକଙ୍କ ଉପରେ ଗାନ୍ଧୀଙ୍କର

Digitized by srujanika@gmail.com

ଯେଉଁଭଳି ପ୍ରଭାବ ଅଛି ସେଥିରେ ସେ ଯେଉଁ କଥାରେ ରାଜି ନ ହେବେ ତାଙ୍କୁ ଜାବୁଡ଼ି ଧରି ଲାଭ କଅଣ ? ଶେଷରେ ଗାନ୍ଧୀ ତାଙ୍କ ଇଚ୍ଛା ବିରୁଦ୍ଧରେ ଯାଇ କଂଗ୍ରେସର ପ୍ରସ୍ତାବରେ ହଁ ମାରିଦେଲେ । ତାଙ୍କ ଅନ୍ତର କାନ୍ଦୁଥାଏ—କେବଳ ମୁହଁ କହୁଥାଏ "ହଉ, ସେଇଆ ହେଉ ।"

ଭାରତ ଦୁଇ ଭାଗ ହୋଇଗଲା । ଗୋଟିଏ ଭାଗର ନାମ ରହିଲା ପାକିସ୍ତାନ । ୧୯୪୭ ଅଗଷ୍ଟ ୧୪ ତାରିଖ ଦିନ ପାକିସ୍ତାନ ହେଲା ସ୍ୱାଧୀନ । ତାହା ପରଦିନ ଅଗଷ୍ଟ ପନ୍ଦରରେ ଭାରତ ସ୍ୱାଧୀନ ହେଲା ବୋଲି ଘୋଷଣା କରାଗଲା । ସେହିଦିନରୁ ଅଗଷ୍ଟ ୧୫କୁ ଭାରତରେ ସ୍ୱାଧୀନତା ଦିବସ ରୂପେ ପାଳନ କରାଯାଉଛି । ଦୁନିଆରେ ସମସ୍ତେ କହିଲେ"—ମଣିଷ ଜାତିକୁ ଗାନ୍ଧୀ ନୂଆ ବାଟ ଦେଖାଇଲେ । ଅସ୍ତ୍ରଶସ୍ତ୍ର ଧରି ନ ଲଢ଼ି ମଧ୍ୟ ଗୋଟାଏ ଜାତି ପରାଧୀନତାର ବେଡ଼ିକୁ ଭାଙ୍ଗି ସ୍ୱାଧୀନ ହୋଇ-ଯାଇପାରେ ।"



Digitized by srujanika@gmail.com

